# ଆଇସ୍‌କ୍ରିମ୍‌ର ପାଲା

(ଶିଶୁ ଗଳ୍ପ ସଂକଳନ)

ଲେଖିକା

**ନିର୍ମଳା ମହାନ୍ତି**

୨୯୭୪, ଲୁଇସ୍ ରୋଡ଼, କେନାଲ ପାଖ, ଭୁବନେଶ୍ୱର-୨

**ଲିପିକା**

ନିକିଗଡ କୁରୁଖି, ହରିରାଜପୁର, ଜଟଣୀ, ପୁରୀ-୭୫୨୦୫୦

ଚିତ୍ର, ଅକ୍ଷର

**ସରସ୍ୱତୀ**

ଗୌରୀ ନଗର, ଭୁବନେଶ୍ୱର-୨

ମୁଦ୍ରଣ

**ବିଶ୍ୱମୁକ୍ତି**

ଶହୀଦ ନଗର, ଭୁବନେଶ୍ୱର-୭

ପ୍ରଥମ ପ୍ରକାଶ

**ଶିଶୁଦିବସ-୨୦୦୫**

**ମୂଲ୍ୟ-୨୦ ଟଙ୍କା**



Digitized by srujanika@gmail.com

ସ୍ନେହର 'ମନ୍‌ସୁନ୍',
'ମେରୁନ୍' ଓ
'ମହକ' ମାନଙ୍କ ହାତରେ ....



Digitized by srujanika@gmail.com

## ସୂଚୀପତ୍ର





Digitized by srujanika@gmail.com



# ଆଇସ୍‌କ୍ରିମ୍‌ର ପାଳା

ଆଇସ୍‌କ୍ରିମ୍ ବାଲାର ମିଠା ମିଠା ଡାକରେ ଶିବୁନ୍‌ର ପତଳା ନିଦଟା ଚାଁଉକରି ଭାଙ୍ଗିଗଲା । ସେ ଧଡ଼ପଡ଼ ହୋଇ ଉଠି ବସିଲା । ସାର୍ଟର ବୋତାମ ଲଗେଇ ଲଗେଇ ତରତର ହୋଇ ଫାଟକ ଖୋଲି ବାହାରକୁ ଆସିଲା ।

ସତରେ ଆଜି ତା'ର ବହୁତ ଆନନ୍ଦର ଦିନ । ଏତିକିବେଳେ ମମି ସିଲେଇ କେନ୍ଦ୍ରକୁ ଯାଇଛନ୍ତି ଆଉ ବାପା ଯାଇଛନ୍ତି ଅଫିସ । ହରିଆ ତା'ର ବାସନମଜା, ଘର ସଜଡ଼ା କାମରେ ଲାଗି ପଡ଼ିଛି । ଇଂରେଜୀ ପଦ୍ୟ ଘୋଷୁ ଘୋଷୁ କେତେବେଳେ ଶିବୁନ୍‌ର ଆଖିଟା ମୁଦି ହୋଇ ପଡ଼ିଥିଲା ତାକୁ ଜଣାନାହିଁ । ଆଉ ଠିକ୍ ବେଳକୁ ଆଇସ୍‌କ୍ରିମ୍ ବାଲାର ଡାକ ।

ଆଜି ସେ ମନଭରି ଖୁବ୍ ଆଇସ୍‌କ୍ରିମ୍ ଖାଇବ । ଏତେ ସୁନ୍ଦର ସୁଆଦିଆ ଜିନିଷକୁ କିଏ ଭଲ ନପାଏ ଯେ ? ଯେତେବେଳେ ସେ ଆଇସ୍‌କ୍ରିମ୍ କଥା କହିବ, ମମି କହିବେ ସେଗୁଡ଼ା ଖାଇଲେ ଦେହ ଖରାପ ହେବ, ଟନ୍‌ସିଲ୍ ବଢ଼ିଯିବ, ଦାନ୍ତ ପୋକ ଖାଇବ, କୃମି କାମୁଡ଼ିବ ଇତ୍ୟାଦି । ଏସବୁ ମିଛ ଉପଦେଶ ଶୁଣି ଶୁଣି ଶିବୁନ୍‌କୁ ଭାରି ଚିଡ଼ା ଲାଗିଲାଣି । ଅବଶ୍ୟ ବେଳେବେଳେ ମମି ତାକୁ ଗୋଟେ ଅଧେ ଦାମି ଆଇସ୍‌କ୍ରିମ୍ କିଣି ଦିଅନ୍ତି । ଶିବୁନ୍‌ର କିନ୍ତୁ



Digitized by srujanika@gmail.com

ସେତିକିରେ ମନ ମାନେନାହିଁ । ତା'ର ସବୁଦିନେ ଖାଇବାକୁ ଇଚ୍ଛା । ଆଇସ୍କ୍ରିମ୍ ବାଲା ଦାଣ୍ଡରେ ଡାକି ଡାକି ଗଲେ ସେ ମୋଟେ ସମ୍ଭାଳି ପାରେନାହିଁ । ମମି ତା'ର ଅଝଟ ପଣ ଦେଖି ଭୁଲାଭୁଲି କରି ଛେନା ବା କ୍ଷୀର ଆଣି ଖାଇବାକୁ ବାଧ୍ୟ କରନ୍ତି । ସେ କ'ଣ ଏତେ ବୋକା ହେଇଛି ଯେ, ମମିଙ୍କ କଥା ବୁଝି ପାରିବ ନାହିଁ ?

ସେ ଯାହା ହଉନା କାହିଁକି, ଆଜି ମନଭରି ନ ଖାଇ ଛାଡ଼ିବ ନାହିଁ । ମମି ଫେରୁ ଫେରୁ ନିଶ୍ଚୟ ଚାରିଟା ବାଜିବ । ଏବେ ତ ମୋଟେ ଗୋଟାଏ ବାଜିଛି । ଆଇସ୍କ୍ରିମ୍ ଖାଇ ସାରି ହାତ ମୁହଁ ଧୋଇ ସୁନାପିଲା ପରି ଶୋଇ ପଡ଼ିବ ।

ଓ......ଆଇସ୍କ୍ରିମ୍ ବାଲା ! ଆସ, ଆସ । ଦୁଇ ହାତରେ ଦୁଇଟା ଆଇସ୍କ୍ରିମ୍ ଉଠାଇ ନେଇ ଖାଇବାରେ ଲାଗି ପଡ଼ିଲା ଶିବୁନ୍ । ତା'ପରେ ଆଉ ଦୁଇଟି ମଲେଇ କ୍ରିମ୍ ଧରି ଘରକୁ ଆସିଲା । ମମିକୁ ନ କହିବା ପାଇଁ ହରିଆକୁ ତାଗିଦା କରି ଗୋଟିଏ ଦେଲା ।

ଟଙ୍କା ପାଇଁ ଆଇସ୍କ୍ରିମ୍ ବାଲା ଠିଆ ହୋଇଛି । ସେ ଏତେ ବ୍ୟସ୍ତ ହୋଇପଡ଼ିଥିଲା ଯେ, ଟଙ୍କା କଥା ମୋଟେ ଭାବି ପାରି ନଥିଲା । ଏବେ ଟିକେ ଅଡୁଆରେ ପଡ଼ିଲା, କ'ଣ କରିବ । ଟଙ୍କା କେଉଁଠି ମମି ରଖିଛନ୍ତି, ଜାଣି ନଥିଲା । ଏପଟ ସେପଟ ହୋଇ ଦେଖେ ତ; ଭାଗ୍ୟକୁ ଆଲମାରି ଖୋଲା । ଖୋଜାଖୋଜି କଲାପରେ ସେ ଗୋଟିଏ ମନିବେଗ୍ ପାଇଲା । ସେଥିରେ କେତେ ଟଙ୍କା ଥିଲା । ଆଇସ୍କ୍ରିମ୍‌ବାଲାକୁ ଟଙ୍କା ବଢ଼େଇ ଦେଇ ହାତମୁହଁ ଧୋଇ ସୁନାପିଲାଟି ପରି ସେ ଖଟ ଉପରେ ଶୋଇ ପଡ଼ିଲା ।

ଚାରିଟା ବାଜିଲା । ମମି ଘରକୁ ଫେରି ଶିବୁନ୍‌କୁ ନିଦରୁ ଉଠାଇଲେ । ମୁହଁ ଧୋଇ ଜଳଖିଆ ଦେଇ ଖେଳିବାକୁ ପଠାଇଦେଲେ । ଶିବୁନ୍‌ର ମନଖୁସିର ସୀମା ନାହିଁ । ମମିଙ୍କୁ ସତରେ ସେ ବୋକା ବନେଇ ଦେଇଛି । ଟଙ୍କା ତ ହାତରେ ପଡ଼ିଛି । ଏଣିକି ପ୍ରତିଦିନ ଖରାବେଳେ ଶିବୁନ୍‌ର ଆଇସ୍କ୍ରିମ୍ ଖିଆ ପାଲା ଚାଲିଲା । ଅନେକ ଥର ହରିଆ ବାରଣ କରିଛି, କିନ୍ତୁ ଶିବୁନ୍ ମାନିନାହିଁ । ଓଲଟି ମମି ବା ବାପାଙ୍କୁ କହିଦେଲେ; ତାକୁ କଥା କହିବ ନାହିଁ କହିଛି । ହରିଆର ଏଇଟା ସବୁଠୁ ବଡ଼ କଷ୍ଟ ଯେ, ଶିବୁନ୍ ସାଙ୍ଗରେ କଥା ନହେଲେ ତାକୁ ଭାରି ଖରାପ ଲାଗେ । ଶିବୁନ୍‌କୁ ସେ ନିଜଠାରୁ ଅଧିକ ଭଲପାଏ ।



Digitized by srujanika@gmail.com

ସେଥିପାଇଁ ଶିବୁନ୍‌ର ସବୁ କଥା ସେ ସହିଯାଏ ।

ମମି ବା ବାପା କେହି ଏକଥା ଜାଣନ୍ତି ନାହିଁ । ଶିବୁନ୍‌ର ହସ, ଜାଣନ୍ତି ନାହିଁ । ଶିବୁନ୍‌ର ହସ, ଖୁସି ଦେଖି ତାଙ୍କ ମନ ଆହୁରି ଖୁସି ହୋଇଯାଏ । ସିଲେଇ କେନ୍ଦ୍ର ଗଲାବେଳେ ମମି ଶିବୁନ୍‌କୁ ତା'ର ସ୍କୁଲ ପଢ଼ା ଶେଷକରି ଶୋଇବା ପାଇଁ କହି ଟିକିଏ ଗେହ୍ଲା କରିଦେଇ ଚାଲିଯାଆନ୍ତି । ବାପା ଫେରିଲାବେଳକୁ ଶିବୁନ୍ ପାଇଁ ଫଳ, ମିକ୍ସର୍, ବିସ୍କୁଟ ଇତ୍ୟାଦି ନେଇ ଆସନ୍ତି । କେଉଁଦିନ କମିକ୍ ବା ଗପବହିରୁ କିଛି । ମମି ଆଶ୍ଚର୍ଯ୍ୟ ହୋଇଯାଆନ୍ତି ଶିବୁନ୍‌ର ପରିବର୍ତ୍ତନରେ । ସେ ଭାବନ୍ତି ଶିବୁନ୍ ଏବେ ଖୁବ୍ ବୁଦ୍ଧିମାନ ହୋଇଗଲାଣି । ନହେଲେ ମମି ଯିବାବେଳେ ସାଙ୍ଗରେ ଯିବାକୁ କନ୍ଦାକଟା କରୁଥିବା ଶିବୁନ୍ ହସରେ ଫାଟିପଡ଼ି ଟା ଟା କରନ୍ତା କେମିତି ?

ଏମିତି ଏମିତି ଦୁଇ ସପ୍ତାହ କଟିଯାଇଛି କି ନାହିଁ, ହଠାତ୍ ଶିବୁନ୍‌ର ଦେହ ଖରାପ ହୋଇ ପଡ଼ିଲା । ତଣ୍ଟିମୂଳ, ଗାଲ, କାନମୁଣ୍ଡା ଫୁଲି ଜର ଆସିଲା । ଦେହରେ ଭୀଷଣ ତାତି । କାଶ ଶର୍ଦ୍ଦିରେ ଅସ୍ତବ୍ୟସ୍ତ ଶିବୁନ୍ । ତା' ସାଙ୍ଗକୁ ପୁଣି ଦାନ୍ତବିନ୍ଧା । ଶିବୁନ୍‌କୁ ଡାକ୍ତରଖାନା ନେଇଗଲେ ବାପା । ଡାକ୍ତର ପରୀକ୍ଷା କଲାପରେ ଶିବୁନ୍‌କୁ ପଚାରିଲେ ତମେ ଆଇସ୍‌କ୍ରିମ୍ ଖାଇଛ କି ? ମୁଣ୍ଡ ହଲାଇ ମନାକଲା ଶିବୁନ୍ ।

ଘରେ ଶିବୁନ୍ ପାଇଁ ସମସ୍ତଙ୍କ ଦୁଃଖର ସୀମା ନାହିଁ । ଜରର କୋପ ବେଳକୁବେଳ ବଢ଼ିବାରୁ ଶିବୁନ୍‌କୁ ଶିଶୁଭବନରେ ରଖାଗଲା । ସେ ଦେଖିଲା, ତା'ରି ପରି ଅନେକ ପିଲା କିଛି ନା କିଛି ରୋଗ ଭୋଗୁଛନ୍ତି । ଯେତେବେଳେ ମମି ନଥା'ନ୍ତି, ଶିବୁନ୍ ସେମାନଙ୍କୁ ପଚାରେ ତମେ କ'ଣ ଆଇସ୍‌କ୍ରିମ୍ ଖାଇଛ ? ଡାକ୍ତରଖାନାରେ ୨/୩ ଦିନ ରହିବା ପରେ ତାକୁ ବହୁତ ଖରାପ ଲାଗୁଥାଏ । ଖେଳ, ବୁଲ, ସାଙ୍ଗ ସାଥୀ, ସବୁ ଗୋଟି ଗୋଟି ମନେ ପଡୁଥାଏ । ଆଗରେ ତା'ର ବାର୍ଷିକ ପରୀକ୍ଷା । କେମିତି ପଢ଼ାପଢ଼ି କରି ପରୀକ୍ଷା ଦବ ସେ ? ନହେଲେ ତ ତାକୁ ସେଇ ଗୋଟିଏ କ୍ଲାସ୍‌ରେ ଆଉ ଗୋଟିଏ ବର୍ଷ ରହିବାକୁ ହେବ । ଅନ୍ୟ ପିଲାମାନେ ତାକୁ ଟପିଯିବେ । ଶିବୁନ୍‌କୁ କେତେ ଲାଜ ମାଡ଼ିବ । ସେ ଖେଳ ପ୍ରତିଯୋଗିତା, ଚିତ୍ର ପ୍ରତିଯୋଗିତା, କେଉଁଥିରେ ମିଶି ପାରିବ ନାହିଁ । ମେଧାବୀ ଛାତ୍ର ହିସାବରେ ସବୁ ବର୍ଷ ପାଉଥିବା ପୁରସ୍କାରକୁ ହରେଇବାକୁ ହେବ । ସାର୍, ମିସ୍, ଅନ୍ୟ ପିଲାମାନେ ତାକୁ ଗଧଟେ ବୋଲି ଭାବିବେ ।



Digitized by srujanika@gmail.com

ଶିବୁନ୍ ଭାବିଲା, ତା'ର ଏଇ ଅବସ୍ଥା ଯେ ଆଇସ୍‌କ୍ରିମ୍ ଖାଇ ହୋଇଛି, ଏକଥା କାହାକୁ କହିବ ? ଡାକ୍ତର ବାବୁଙ୍କୁ ସତକଥା ନ କହିଲେ ତ ଭାରି ଅଡୁଆ କଥା । ସେ ଶୁଣିଛି, ଡାକ୍ତରଙ୍କୁ ସତ ନ କହିଲେ ରୋଗ ଭଲ ହେବନାହିଁ । ଯାହା ପଛେ ହଉ ଆଜି ସେ ଡାକ୍ତରବାବୁଙ୍କୁ ସବୁ କଥା କହିଦେବ । କିନ୍ତୁ କେମିତି ? ସେ ତ ଥରେ ତାଙ୍କୁ ମିଛ କହିଛି ।

ଏତିକିବେଳେ ଘରେ ଟଙ୍କାର ଖୁବ୍ ଦରକାର ପଡ଼ିଲା । ଗୋଟିଗୋଟି ସବୁଜାଗା ଖୋଜିଲେ ମମି । ମନିବେଗ୍‌ରେ ରଖିଥିବା ଶହେଟଙ୍କାକୁ ଖୋଜୁ ଖୋଜୁ ଦେଖିଲେ ମନିବେଗ୍ ଖୋଲି ପଡ଼ିଛି । ମୁଣ୍ଡ ତାଙ୍କର ଗୋଳମାଳ ହୋଇଗଲା । ଘରେ ତ ଆଉ କେହି ନାହାନ୍ତି । ସେ ସନ୍ଦେହ କଲେ ହରିଆକୁ । ହରିଆ ବିଚରା ବଡ଼ ଅଡୁଆରେ ପଡ଼ିଲା । କହିଦେଲେ ଶିବୁନ୍ ରାଗିବ । ସହଜେ ତା'ର ଦେହ ପୁଣି ଖରାପ । ନ କହିଲେ ନିଜେ ଚୋର ବୋଲି ପୁଣି ବଦନାମ ହେବ । ଯାହା ହେଉପଛେ, ସେ ଶିବୁନ୍‌ର ନାଁ କହି ତାକୁ ଗାଳି ଶୁଣାଇବ ନାହିଁ । ମା' ପଛେ ତାକୁ ଯାହା ମାଡ଼ ଗାଳି ଦିଅନ୍ତୁ । ଶିବୁନ୍‌କୁ କିଛି ବି ନ କୁହନ୍ତୁ । ଶିବୁନ୍ ତାକୁ କେତେ ଭଲ ପାଏ !

ବାବୁ, ମା', ସମସ୍ତଙ୍କର ରାଗ ହରିଆଠାରେ । ହରିଆ ଚୁପ୍ ରହିଥାଏ ଦୋଷୀଟି ପରି । ହରିଆର ବାପାଙ୍କୁ ଡକାଇ ତାକୁ ଘରୁ ବିଦା କରିବା କଥା ସ୍ଥିର ହେଲା । ଏମିତି ଚୋର ପିଲାକୁ ରଖି ଲାଭ କଅଣ ? ଏମିତି ଏମିତି ଛୋଟରୁ ବଡ଼ ଜିନିଷ ବି ଉଠେଇନେବ ।

ଶିବୁନ୍‌ର ଦେହ ଅନେକଟା ଭଲ ହୋଇ ଆସିଛି । କାଲି ତା'ର ଘରକୁ ଫେରିବା କଥା ଡାକ୍ତର କହିଛନ୍ତି । ଆନନ୍ଦ ଓ ଦୁଃଖରେ ହରିଆ ଆଖିରୁ ଲୁହ ବୋହିପଡୁଥାଏ । ଯିବା ଆଗରୁ ସେ ଶିବୁନ୍‌ଠାରୁ ବିଦାୟ ନେବାକୁ ଡାକ୍ତରଖାନା ଆସିଲା । ହରିଆର ହଠାତ୍ ବିଦା ହୋଇଯିବାର କାରଣ ଶିବୁନ୍ ବୁଝି ସାରିଥିଲା ।

ଶିବୁନ୍ ଏଥର ଆଉ ସତକୁ ଲୁଚାଇ ରଖିପାରିଲା ନାହିଁ । ହରିଆର ନିରୀହ ଶୁଖିଲା ମୁହଁଟି ତାକୁ ବାରମ୍ବାର ଆଘାତ ଦେଲା । କେଉଁ କଥାରୁ ଘଟଣା କେତେଦୂର ଗଲାଣି । ଶିବୁନ୍ ପାଇଁ ଆଜି ଏତେବଡ଼ ପାଳା ଲାଗିଛି । ଏତେ କଥାରୁ କେଉଁ ଲାଭ ମିଳିଲା ଅବା ତାକୁ !

ହରିଆ ଆଖି ଛଳ ଛଳ କରି ଶିବୁନ୍‌ର ଦେହ, ମୁହଁକୁ ଆଉଁସିଦେଇ



Digitized by srujanika@gmail.com

କହିଲା, ଠାକୁର ତମକୁ ଭଲ କରିଦିଅନ୍ତୁ ବାବୁ, ମୁଁ ଆଜି ଘରକୁ ଚାଲିଯାଉଛି, ମୋ ଉପରେ ରାଗିବ ନାହିଁ ।

ଶିବୁନ୍ ହରିଆ ହାତକୁ ଜୋରରେ ମାଡ଼ିବସି କଇଁ କଇଁ କାନ୍ଦି କହିଲା, ନା ହରିଆ, ତୁ ଆମରି ଘରେ, ମୋରି ପାଖରେ ସବୁଦିନେ ରହିବୁ । ତତେ ଛାଡ଼ି ମୁଁ ମୋଟେ ରହିପାରିବି ନାହିଁ ।

ମମି ସେତେବେଳକୁ ଖୁବ୍ ରାଗିଗଲେଣି । କିଛି ନ କହି ଶିବୁନ୍‌କୁ କଡ଼ା ଦୃଷ୍ଟିରେ ଚାହିଁଲେ ।

ଏଥର ଶିବୁନ୍ ମମିକୁ କୁଣ୍ଢାଇ ଧରି ସବୁକଥା ଗୋଟି ଗୋଟି କହିଗଲା ଓ ନିଜର ଏତେବଡ ଭୁଲ ପାଇଁ କ୍ଷମା ମାଗିଲା ।

କିଛି ନ ବୁଝି ନ ବିଚାରି ଅଯଥାରେ ହରିଆକୁ ସନ୍ଦେହ କରିଥିବାରୁ ମନେ ମନେ ଦୁଃଖିତ ଓ ଲଜ୍ଜିତ ହେଲେ ମମି ।

ଶିବୁନ୍ ଓ ହରିଆକୁ ଦୁଇ କଡରେ ଯାକି ଧରିଲେ ସେ । ଆଖି ତାଙ୍କର ଛଳ ଛଳ ହୋଇଆସୁଥିଲା ।

ଏଣିକି ମମି, ବାପା ଓ ଘରର ସମସ୍ତେ ହରିଆକୁ ପୁଅ ଭଳି ଭଲପାଇଲେ, ସ୍କୁଲ୍‌ରେ ହରିଆର ନାଁ ଲେଖା ହେଲା, ନୂଆ ବହି, ଖାତା, ପେନ୍‌ସିଲ୍, ରବର, ସ୍କୁଲ୍ ଡ୍ରେସ୍, ଜୋତା, ମୋଜା ଇତ୍ୟାଦି କିଣା ହେଲା । ଶିବୁନ୍ ସହିତ ସାଙ୍ଗ ହୋଇ ପାଠ ପଢ଼ିବା ପାଇଁ ସ୍କୁଲ୍ ଗଲା ସେ । ପଢ଼ାବେଳେ, ଖେଳବେଳେ ଖେଳରେ ମନ ଦେଇ ପୁରସ୍କାର ପାଇଲା ।

ଅଳ୍ପଦିନରେ ହରିଆର ବୁଦ୍ଧି ବିଦ୍ୟା ସମସ୍ତଙ୍କୁ ଅବାକ୍ କରିଦେଲା ।





Digitized by srujanika@gmail.com



# ପିଣ୍ଟୁର ମାମୁଁ ଘର ବୁଲା

ପିଣ୍ଟୁ ସୁଦୂର ଦିଲ୍ଲୀ ସହରରେ ମା' ବାପାଙ୍କ ପାଖରେ ରହେ । ମଣ୍ଟି ତା'ର ଟିକି ଭଉଣୀ । ଭାଇ ଭଉଣୀ ଦୁହେଁ ଦୁହିଁଙ୍କୁ ଖୁବ୍ ଭଲ ପାଆନ୍ତି ଜଣେ ଜଣକୁ ନଦେଖିଲେ ଖାଇବା ପିନ୍ଧିବା ରୁଚେନାହିଁ । ପିଣ୍ଟୁର ବାପା ସେଠାରେ ବଡ଼ ଇଂଜିନିୟର, ମା' ମଧ୍ୟ କଲେଜରେ ଅଧ୍ୟାପିକା । ମା'ବାପା ଅଫିସ ଯିବାବେଳେ ପିଣ୍ଟୁ ଓ ମଣ୍ଟିବି ସ୍କୁଲ ଯାଆନ୍ତି । ପିଣ୍ଟୁକୁ ସାତ ବର୍ଷ, ମଣ୍ଟି ତା' ଠାରୁ ଦୁଇବର୍ଷ ସାନ ।

କିଛିଦିନ ତଳେ ବଡ଼ଦିନ ଛୁଟି ହୋଇଥାଏ । ଘରକୁ ମାମୁଁ ଆସିଥାଆନ୍ତି । ମାମୁଁଙ୍କୁ ଦେଖି ପିଣ୍ଟୁ ଓ ମଣ୍ଟିଙ୍କ ମନରେ ବହୁତ ଆନନ୍ଦ । ମାମୁଁଙ୍କ ସାଙ୍ଗରେ ଖାଇବା, ପାଖରେ ଶୋଇବା, ମଜା ମଜା ଗପ ଶୁଣିବାରେ ସମୟ ଖୁସିରେ କଟିଯାଉଥାଏ । ଅନ୍ୟ ଦିନ ହୋଇଥିଲେ, ମା' ବାପା ଅଫିସରୁ ନ ଫେରିବା ଯାଏ ଦୁହିଁଙ୍କୁ କିଛି ଭଲ ଲାଗନ୍ତା ନାହିଁ ।

ଏଥର ମାମୁଁଙ୍କର ଗାଁକୁ ଯିବାବେଳ ପାଖେଇ ଆସିଲା ଜାଣି ପିଣ୍ଟୁ ଓ ମଣ୍ଟି ଦୁହିଁଙ୍କ ମୁହଁ ଶୁଖିଗଲା । ମାମୁଁ କିନ୍ତୁ ଆଉ ବେଶିଦିନ ରହିବାକୁ ରାଜି



Digitized by srujanika@gmail.com

ନୁହଁନ୍ତି, କାରଣ ଘରେ ତାଙ୍କର ଅନେକ କାମ ।

ପିଣ୍ଟୁର ଛୁଟି ଥିବାରୁ ମାମୁଁ ତାକୁ ସାଙ୍ଗରେ ନେବାପାଇଁ ମା'ଙ୍କୁ କହିଲେ । ପିଣ୍ଟୁତ ଏଇ ସୁଯୋଗକୁ ବହୁଦିନୁ ଅପେକ୍ଷା କରିଥିଲା । ମା' ଯେମିତି ହଁ ଭରିଛନ୍ତି ନିଜର ପେଣ୍ଟ ସାର୍ଟ ଇତ୍ୟାଦି ସବୁ ଜିନିଷ ସଜାଡ଼ି ବାହାରି ପଡ଼ିଲା । ମଣ୍ଟିକୁ ଛାଡ଼ି ଯାଉଥିବାରୁ ମନରେ ଟିକିଏ ଦୁଃଖ ଆସୁଥାଏ, ସେ ଭାବୁଥାଏ ମଣ୍ଟି କାହା ସାଙ୍ଗରେ ଖେଳିବ, ଖାଇବ ଓ କଥା ଗପିବ ? ମଣ୍ଟିଟା ଛୋଟ ହୋଇଥିବାରୁ ମା'ତାକୁ ଛାଡ଼ିଲେ ନାହିଁ, ଏବେତ ମା'ଙ୍କର ବଡ଼ଦିନଛୁଟି, ମଣ୍ଟି ମା'ଙ୍କ ସାଙ୍ଗରେ ଗପି, ଖେଳି ଚଳିଯିବ ।

ମାମୁଁଙ୍କ ସାଙ୍ଗରେ ଗାଡ଼ିରେ ଉଠିଲା ପିଣ୍ଟୁ, ବାପା ମା' ଓ ମଣ୍ଟିକୁ ଟା, ଟା, ଜଣାଇ । କଳାଧୂଆଁ ଛାଡ଼ି ଗାଡ଼ି ଚାଲିଥାଏ କେତେ କୋଠାବାଡ଼ି କଳ, କାରଖାନାକୁ ପଛରେ ପକାଇ । ମାମୁଁଙ୍କ ପାଖରେ ବସି ଗପ ଶୁଣୁଥାଏ ପିଣ୍ଟୁ ଏ ସହର ଛାଡ଼ି ଏତେଦୂରକୁ ଆସିବା ପିଣ୍ଟୁର ପ୍ରଥମ । ତେଣୁ ତାକୁ କେମିତି ନୂଆ ନୂଆ ଲାଗୁଥାଏ । ମନଜାଣି ମାମୁଁ ତାକୁ ବାଟରୁ ଅନେକ ଜିନିଷ କିଣିଦେଉଥାନ୍ତି । ବାଟରେ ଯେଉଁ ଯେଉଁ ଜାଗା ମାନ ପଡୁଥାଏ, ସେ ବିଷୟରେ ସେ ସବୁକଥା କହି ଚାଲିଥାଆନ୍ତି । ଦୁଇ ଦିନ ଗାଡ଼ିରେ କଟିବାପରେ ଶେଷରେ ଗାଡ଼ି ଯେଉଁ ଷ୍ଟେସନରେ ପହଁଚିଲା, ମାମୁଁ ଘର ସେଠାରୁ ଆହୁରି ଅନେକ ଦୂର ଏକ ମଫସଲ ଗାଁରେ । ଗାଡ଼ିରୁ ଓହ୍ଲେଇ ପିଣ୍ଟୁ ମଟରରେ ବସିଲା, ତା'ପରେ ରିକ୍ସା । ରିକ୍ସା ଧୀରେ ଧୀରେ ଚାଲିଥାଏ । ଆବଡ଼ା-ଖାବଡ଼ା କଚ୍ଚା ରାସ୍ତା । ଯେଉଁଆଡ଼େ ଚାହିଁଲେ ଖାଲି ଫସଲ କ୍ଷେତ । ଗଛ ବୃଛ, ନଈ, ନାଳ, ଚାଳଘର ମାଳକୁ ମାଳ । ପିଣ୍ଟୁକୁ ଏସବୁ ଭାରି ମଜା ଲାଗୁଥାଏ । ନଈ କୂଳେ କୂଳେ ଚାଲିଥାଏ ରିକ୍ସା । ଲାଗୁଥାଏ ଗାଁର ଏଇ ସୁନ୍ଦର ରୂପ, ସତେକି କେଉଁ ବିଶିଷ୍ଟ ଚିତ୍ରକରଙ୍କର ହାତ ଅଙ୍କା ଚିତ୍ରଟିଏ ।

ମାମୁଁ ପିଣ୍ଟୁକୁ ସବୁ ବୁଝାଇ ଦେଉଥାଆନ୍ତି । କେଉଁଠି ଧାନକଟା ଚାଲିଛି, କେଉଁ ଜମିରେ ସୁନାରଂଗର ସୋରିଷ ଫୁଲ ହସୁଛି, ପିଲାମାନେ କେଉଁଠି ବିରି, ମୁଗ ଛୁଇଁ ତୋଳିବାରେ ଲାଗି ପଡ଼ିଛନ୍ତିତ କେଉଁଠି ବରକୋଳି ଖାଇବାରେ



Digitized by srujanika@gmail.com

ବ୍ୟସ୍ତ, ପୁଣି କେଉଁଠି ଆଖୁ ପେଡ଼ା ଚାଲିଛି ।

ସୂର୍ଯ୍ୟଙ୍କର ଅସ୍ତ ସମୟ ହୋଇ ଆସୁଥିଲା । ଏତେବଡ଼ ଖୋଲା ପଡ଼ିଆରେ ସୂର୍ଯ୍ୟଙ୍କର ଏଇ ସୁନ୍ଦର ରୂପ ଦେଖି ଆନନ୍ଦରେ ତାଳିମାରି ଉଠିଲା ପିଣ୍ଟୁ । ମାମୁଁ କହିଲେ ହେଇ ଦେଖ, ଏ ଯେଉଁ ନଡ଼ିଆ ଗଛ, ତାଳଗଛ ସନ୍ଧିରେ ବଡ଼ ଦେଉଳଟି ଦିଶୁଛି, ସେଇ ଆମରି ଗାଁ, ତୋ'ର ମାମୁଁଘର । ଏବେ ଆମେ ଗାଁ ମୁଣ୍ଡରେ ପହଁଚି ଗଲେଣି, ଏଥର ରିକ୍ସାକୁ ବିଦାକରିଦେଇ ଚାଲି ଚାଲି ଯିବା ।

ପିଣ୍ଟୁ ମାମୁଁଙ୍କ ପଛେ ପଛେ ଗାଁଦାଣ୍ଡରେ ଚାଲିଥାଏ । ଗାଁର ଦୁଇପଟେ ମାଳ ମାଳ ଚାଳଘର, ଚଉରା । କାନ୍ଥରେ ଝୋଟି ଚିତା, ଘର ବାହୁଡ଼ା ଗୋରୁ ପଲ୍ଲଙ୍କୁ ଦେଖି ପିଣ୍ଟୁ ଭାବୁଥାଏ ସତେ ସେ କେଉଁ ସପନ ରାଇଜକୁ ଚାଲି ଆସିଛି । କେତେ ବୁଢ଼ା ବୁଢ଼ୀ, ପିଲା ତା'ରି ଆଡକୁ ଚାହିଁ ରହିଥାଆନ୍ତି । ପିଣ୍ଟୁ ସେମାନଙ୍କର ନୂଆ ଅତିଥିଟିଏ ।

ଗୋଟିଏ ବଡ଼ ଚାଳଘର ଦାଣ୍ଡ ପାହାଚରେ ପାଦଦେଇ ଭିତରକୁ ପଶିଲେ ମାମୁଁ । ସଂଗେ ସଂଗେ କିଏକେତେ ଘେରିଗଲେ ତାକୁ । କାହାକୁ ଚିହ୍ନି ପାରୁ ନଥାଏ ସେ । ସମସ୍ତେ ତାକୁ ଟେକିନେଇ ଗେହ୍ଲା କରୁଥାଆନ୍ତି । ମାଆ କହନ୍ତି ପିଣ୍ଟୁକୁ ଦୁଇବର୍ଷବେଳେ ସେ ମାମୁଁ ଘର ଆସିଥିଲେ । ଏତେ ଛୋଟଦିନର କଥା କେମିତି ଅବା ମନେରଖନ୍ତା ସିଏ । କିଏ ତା'ର ପେଣ୍ଟ ସାର୍ଟ ଓହ୍ଲାଇ ଆଉ ହଳେ ପିନ୍ଧାଇ ଦେଲାଣିତ, କିଏ ଗୋଡ଼ ହାତ ପୋଛି ଦେଲାଣି ଆଉ କିଏ ତା' ଖାଇବା ଯୋଗାଡ଼ରେ ଲାଗିଗଲାଣି । ତାଙ୍କ ଘରେତ ଏସବୁ କାମ ତା'ନିଜକୁ କରିବାକୁ ହୁଏ । ଜୋତା, ମୋଜା, ପେଣ୍ଟ କୁରୁତା ସଫାଠାରୁ ପଢ଼ାଘର ସଜଡ଼ା, ବଗିଚାରେ ପାଣିଦିଆ ଇତ୍ୟାଦି ଅନେକ କାମ ସେ ହାତରେ କରେ ।

ଆଈଙ୍କୁ ଚିହ୍ନିବାରେ ଭୁଲ୍ ହେଇନି ପିଣ୍ଟୁର । କାରଣ ଗଲାବର୍ଷ ଆଈ ତାଙ୍କ ସହରରେ ତାଙ୍କ ଘରେ କିଛି ଦିନ ରହିଥିଲେ, ସେ ମାଆଙ୍କ ସାଙ୍ଗରେ ଆଈଙ୍କୁ ନେଇ ତାଙ୍କ ସହର ଚାରିପାଖେ ବୁଲାଇ ଥିଲା । ଆଈ କହୁଥିଲେ,



Digitized by srujanika@gmail.com

ତମେମାନେ ଏତେ ସହରୀ ହୋଇ ଗଲଣି ଯେ, ଗାଁ ମାଟିକୁ ଦେଖିବା କଥା ପୂରା ଭୁଲିଗଲଣି । ପିଣ୍ଟୁ କହିଥିଲା ଆଈ ! ତମ ମଫସଲ କେମିତି ? ଆଈ କହିଲେ ବହୁତ ଭଲ । ଥରେ ନଦେଖିଲେ ବିଶ୍ଵାସ ଯିବୁନି । ଆଈଙ୍କର ସେ କଥା କେତେ ସତ, ବୁଝିଲା ପିଣ୍ଟୁ ଏଇଠିକୁ ଆସିବା ପରେ । ରାତିରେ ଆଈ ଓ ମାଉସୀଙ୍କ ପାଖରେ ଶୋଇଲା । ଆଈ ତାକୁ କେତେ ମଜା ମଜା ଗପ ଶୁଣାଇଲେ । ପ୍ରଥମେ ପିଣ୍ଟୁ କାହାକୁ ନଚିହ୍ନି ପାରି କଥାବାର୍ତ୍ତା କରିବାକୁ ଲାଜ କରୁଥିଲା । ଦୁଇ ଚାରିଦିନ ପରେ ଏତେ ମିଶି ଗଲାଯେ, ତାଙ୍କ ସହର, ସାଙ୍ଗସାଥୀ ବାପା ମାଆଙ୍କ କଥା ପୂରା ଭୁଲିଗଲା । ଗାଁ ମନ୍ଦିର, ନଈକୂଳର ମାଛଧରା, ଫସଲ କଟା, ଆମ୍ବ ନଡ଼ିଆ ତୋଟା, ହାଟ, ମକର ଯାତ ମାମୁଁ ତାକୁ ବୁଲାଇ ଦେଖାଇଲେ । ଡ଼ଙ୍ଗାରେ ବସି ନଈ ଆରପାରିକୁ ଚଢ଼େଇ ଧରିବାକୁ ଗଲା ପିଣ୍ଟୁ ମାମୁଁଙ୍କ ସାଙ୍ଗରେ । ସ୍ୱଚ୍ଛ ନେଳି ପାଣିରେ ଜହ୍ନ ମାମୁଁର ମୁହଁ, ସଂଜ ପହରେ କି ସୁନ୍ଦର ଚିକିମିକି କରୁଥାଏ ।

ସହରର କୋଳାହଳ, ଗାଡ଼ିମଟର ଶବ୍ଦ, ବିଜୁଳି ଆଲୁଅ, ସିନେମା, ସର୍କସ କିଛି ନଥିଲା ସେଠାରେ । ତଥାପି କାହିଁକି କେଜାଣି ଗପ ବହିର ଅଦ୍ଭୁତ କାହାଣୀ ପରି ତା'ମନ ବାନ୍ଧି ହୋଇ ପଡ଼ିଥିଲା । ଖୁବ୍ ଭୋର୍‌ରୁ ଆଈ ତାକୁ ବିଛଣାରୁ ଉଠାଇ ମୁହଁ ଧୋଇଦିଅନ୍ତି, ବଗିଚାକୁ ଫୁଲ ତୋଳିବାକୁ ସାଙ୍ଗରେ ନେଇ ସୂର୍ଯ୍ୟ ଉଦୟ ଦେଖାନ୍ତି, ସକାଳର ସୁନେଲୀ କିରଣରେ ଫୁଲମାନେ ଫିକ୍ ଫିକ୍ ହସୁ ଥାଆନ୍ତି ଅବା ! ଠିକ୍ ସେମିତି ସଂଜ ଆଗରୁ ସୂର୍ଯ୍ୟ ଅସ୍ତ ଦେଖାନ୍ତି । କାହିଁ ? ସେ ରହୁଥିବା ସହରରେ କେବେ ଦିନଟିଏ ବି ସେ ଏଇ ଦୃଶ୍ୟ ଦେଖିପାରିନି । ସେଠାରେ କ'ଣ ସୂର୍ଯ୍ୟ ସକାଳୁ ଉଦୟ ହୁଅନ୍ତି ନାହିଁ । ସେଠାରେ ସେ ବିଛଣାରୁ ସାତଟାବେଳେ ଉଠେ । ଏଠି ଏତେ ଜଲ୍‌ଦି ଉଠି ପଡୁଚି କେମିତି ? ଏଠାରେ ତ ସମୟ ଗୁଡ଼ାକ ଖୁବ୍ ମଜାରେ କଟିଯାଉଚି ତା'ର । ସେଠରେ ସ୍କୁଲ ଛୁଟି ପରେ ମଣ୍ଟିକୁ ନେଇ ଗେଟ୍ ଭିତରେ ଖେଳିବାକୁ ହୁଏ । ବାପା, ମା' ଅଫିସରୁ ଫେରିବାପରେ ସଂଜକୁ ଟିକିଏ କଥାବାର୍ତ୍ତା । ସେଠାରେ ରୁଟିନ୍ ବନ୍ଧା କାମ ଓ ଜୀବନ । ସମୟ ଏଠାରେ କେମିତି କଟି



Digitized by srujanika@gmail.com

ଯାଉଛି, ଜମା ଜାଣି ପାରୁନି ପିଣ୍ଟୁ । ପ୍ରଥମେ ତାକୁ ଗାଁଟା ରାତିହେଲେ ଅନ୍ଧାରୁଆ ଲାଗୁଥିଲା । ଏବେ ଡ଼ିବିରି ଲଣ୍ଠନ ଆଲୁଅ, ଧୂଳିମାଟି ରାସ୍ତା ତାକୁ ବହୁତ ଭଲ ଲାଗୁଛି । ଆଉ ଭଲ ଲାଗୁଛି ଏଠି ସାଙ୍ଗସାଥୀଙ୍କ ସ୍ନେହ ଓ ବାଗୁଡ଼ି ବୋହୂଚୋରୀ ଖେଳ କଉତୁକ ।

ଛୁଟି ପୂରିବାକୁ ଚାରିଦିନ ଥାଏ, ମା'ଙ୍କ ପାଖରୁ ଚିଠିଆସିଲା, ପିଣ୍ଟୁକୁ ଘରେ ଛାଡ଼ି ଆସିବା ପାଇଁ । ଏକଥା ଶୁଣି ସମସ୍ତଙ୍କ ମୁହଁ ଶୁଖିଗଲା । ଡେରି ହେଲେ ତା'ର ପାଠ ପଢ଼ାରେ ଅସୁବିଧା ହେବ ବୋଲି ଇଚ୍ଛା ନଥିଲେ ବି ପିଣ୍ଟୁ ନିଜର ବେଗ୍ ପତ୍ର ସଜଡ଼ା ସଜଡ଼ି କଲା । ଏତେ ସ୍ନେହ, ଆଦର, ଆନନ୍ଦ ଛାଡ଼ି ଯିବାକୁ ପିଣ୍ଟୁର ମୋଟେ ଇଚ୍ଛା ହେଉ ନଥାଏ । ଅଜା, ଆଈ, ମାଉସୀ, ମାମୁଁ, ମାଇଁ, ସମସ୍ତଙ୍କ ଆଖିଲୁହରେ ଓଦା ଓଦା । ପିଣ୍ଟୁର ଆଖିବି ଛଳ ଛଳ ହୋଇ ଉଠିଲା । ଗାଁର ପିଲାମାନେ ତାକୁ ଘେରିଗଲେ, କେତେ ଆଦର କଲେ, ତା'ପରେ ଚିଠି ଦେବାପାଇଁ ପିଣ୍ଟୁକୁ ବାରମ୍ବାର କହିଲେ । ସେ ମାମୁଁଙ୍କ ସାଙ୍ଗରେ ବାହାରିଲା ।

ଏଥର ମୁହଁ ଟେକି କାହାକୁ ଚାହିଁ ପାରୁନଥାଏ ପିଣ୍ଟୁ । ଗୁରୁଜନମାନଙ୍କ ପାଦଧୂଳି ମୁଣ୍ଡରେ ମାରି, ଯିବାପାଇଁ ରିକ୍ସାରେ ବସିଲା । ପଛରେ ରହିଗଲା ଧୂଳିମାଟି ଗାଁର ସୁନ୍ଦର ରୂପ ।

ମା'ଙ୍କ ପାଖରେ ପହଞ୍ଚି ଗାଁର ସାଙ୍ଗ ସାଥୀ, ଆଈ ଇତ୍ୟାଦିଙ୍କୁ ଚିଠି ଲେଖିଲା ପିଣ୍ଟୁ ।

ସ୍କୁଲର ରଚନା ପ୍ରତିଯୋଗିତାରେ ଗାଁ ବିଷୟରେ ସେଦିନ ଯେଉଁ ରଚନାଟି ଲେଖିଥିଲା, ସେଥିରେ ପ୍ରଥମ ପୁରସ୍କାର ପାଇଥିଲା ପିଣ୍ଟୁ । ଗାଁକୁ ନ ଆସିଥିଲେ, ସେ କ'ଣ ଏତେ ସୁନ୍ଦର ରଚନା ଲେଖି ପାରିଥାଆନ୍ତା ?

ପିଣ୍ଟୁ ମନେ ମନେ ସ୍ଥିରକଲା, ଏଣିକି ସେ ପ୍ରତିବର୍ଷ ଛୁଟିହେଲେ ନିଶ୍ଚେ ଗାଁକୁ ଯିବ । ଗାଁର ସବୁ ଋତୁର ନୂଆ ନୂଆ ରୂପ ଅନୁଭବ କରିବାପରେ ସେ ଚିତ୍ର ଆଙ୍କିବ ଓ ଗପ ଲେଖିବ ।

ପିଣ୍ଟୁର ଗାଁ ପ୍ରତି ଅଧିକ ମମତା ଦେଖି ବାପା ତାକୁ କହିଲେ ଏଥର



Digitized by srujanika@gmail.com

ଗ୍ରୀଷ୍ମ ଛୁଟିରେ କଟକ ଘରକୁ ଯିବାବେଳେ ଆମେମାନେ ଗୋଟିଏ ସୁନ୍ଦର ଗାଁକୁ ଯିବା । ଗାଁଟିର ନାମ ସାକ୍ଷୀଗୋପାଳ, ସେଠାରେ ଆମର ଜଣେ ମାଉସୀଙ୍କ ଘର । ମାଉସୀ, ମଉସା ଓ ତାଙ୍କର ପିଲାମାନେ ସମସ୍ତେ ସେଠାରେ ରହନ୍ତି । ମାଉସୀ, ମଉସା ବହୁତଥର ତାଙ୍କ ଘରକୁ ନିମନ୍ତ୍ରଣ କରିଛନ୍ତି, ଏଥର ତାଙ୍କର ବାହାଘରକୁ ଆମକୁ ଯିବାକୁ ପଡ଼ିବ । କଟକରୁ ଭୁବନେଶ୍ୱର ବାଟଦେଇ ସେଠାକୁ ଯିବାକୁ ହୁଏ । ସେଠାରେ ସାକ୍ଷୀଗୋପୀନାଥଙ୍କ ମନ୍ଦିର ଅଛି । ଭୁବନେଶ୍ୱର ଆମ ଓଡ଼ିଶାର ରାଜଧାନୀ । ଏହା ମଧ୍ୟ ଗୋଟିଏ ବଡ଼ ଦର୍ଶନୀୟ ସ୍ଥାନ । ଏଠାରେ ବହୁତ ଦେବଦେବୀଙ୍କର ମନ୍ଦିର ଥିବାରୁ ଏହାକୁ ମନ୍ଦିରମାଳିନୀ ସହର କୁହାଯାଏ । ଏଠାରେ ଲିଙ୍ଗରାଜ ମନ୍ଦିର ସବୁଠାରୁ ବଡ଼ ମନ୍ଦିର । ଦେଶବିଦେଶ ସବୁପ୍ରାନ୍ତରୁ ଲୋକମାନେ ଏଠାକୁ ବୁଲିଆସନ୍ତି । ବାଟରେ ପଡ଼େ ପିପିଲି । ଚାନ୍ଦୁଆ ଓ ଛୁଞ୍ଚିକାମ ପାଇଁ ଯାହା ଦେଶ ବିଦେଶରେ ଆଦର ଲାଭ କରିଛି ।

ସାକ୍ଷୀଗୋପାଳଙ୍କ ନାମରେ ଏକ ସୁନ୍ଦର କିମ୍ବଦନ୍ତୀ ଅଛି । ଯେଉଁଠି ଭଗବାନ୍ କୃଷ୍ଣ ତାଙ୍କର ଭକ୍ତ ପାଇଁ ସାକ୍ଷୀ ଦେବାକୁ ଆସି ମୂର୍ତ୍ତି ରୂପରେ କାଳ କାଳ ଧରି ପୂଜା ପାଉଛନ୍ତି । ସେଠାରୁ ଅଳ୍ପ ଦୂରରେ 'ରଘୁରାଜପୁର' ବୋଲି ଗୋଟିଏ ଗାଁ ଅଛି । ସେ ଗାଁରେ ଘରେ ଘରେ ଲୋକମାନେ ପଟ୍ଟଚିତ୍ର ତିଆରି କରନ୍ତି । ଏଇ ପଟ୍ଟଚିତ୍ରରେ ଏତେ ସୁନ୍ଦର କାରୁକାର୍ଯ୍ୟ ରହିଛି ଯେ, ଦେଖଣାହାରି ଆଖି ଲାଖିରହେ ।

ସାକ୍ଷୀଗୋପାଳଠାରୁ ପୁରୀ ଅଳ୍ପ ଦୂର । ପୁରୀରେ ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ଅଛି । ଜଗନ୍ନାଥଙ୍କୁ ବଡ଼ ଠାକୁର କୁହାଯାଏ । ମନ୍ଦିରକୁ ବଡ଼ଦେଉଳ, ଦାଣ୍ଡକୁ ବାଡ଼ଦାଣ୍ଡ, ଭୋଗକୁ ମହାପ୍ରସାଦ କୁହାଯାଏ । ଏହା ସମୁଦ୍ର କୂଳରେ ଅବସ୍ଥିତ ହୋଇଥିବାରୁ ଅତ୍ୟନ୍ତ ସୁନ୍ଦର ଓ ଆନନ୍ଦଦାୟକ । ପ୍ରତି ସମୟରେ ଏଠାକୁ ଅସଂଖ୍ୟ ତୀର୍ଥଯାତ୍ରୀ ବୁଲିଆସନ୍ତି । ପୁରୀଠାରୁ ଅଳ୍ପଦୂରରେ କୋଣାର୍କର ସୂର୍ଯ୍ୟ ମନ୍ଦିର ଅବସ୍ଥିତ । ପୁରୀ ଓ କୋଣାର୍କ ପାଇଁ ଓଡ଼ିଶାର ସ୍ଥାନ ବହୁତ ଉଚ୍ଚରେ । ଏହି ମନ୍ଦିରର କାରୁକାର୍ଯ୍ୟ ସାରା ପୃଥିବୀର ଲୋକମାନଙ୍କୁ ଆଶ୍ଚର୍ଯ୍ୟ



Digitized by srujanika@gmail.com

ଚକିତ କରି ଦେଇଛି । ଏସବୁ ଛାଡ଼ି ମଧ ଆହୁରି ଅନେକ ସୁନ୍ଦର ସ୍ଥାନମାନ ଅଛି । ସେଇ ସବୁ ସ୍ଥାନମାନଙ୍କୁ ବୁଲିଯିବା, ସମୁଦ୍ରରେ ଲହଡ଼ି ଭାଙ୍ଗିବା, ସିପ, ଶାମୁକା, ମାଳୀ ଓ କାଠରେ ତିଆରି ଅନେକ ସୁନ୍ଦର ଜିନିଷ ଘର ସଜେଇବା ପାଇଁ କିଣିବା ।

ଆମର ମାତୃଭୂମି, ମାତୃଭାଷା, କଳା ସଂସ୍କୃତିକୁ ଯେଉଁଠି ଥିଲେ ବି ମନ ପ୍ରାଣ ଦେଇ ନିଶ୍ଚୟ ଭଲ ପାଇବା ।

ପିଣ୍ଟୁ ବାପାଙ୍କର କଥାକୁ ତନ୍ମୟ ହୋଇ ଶୁଣୁଶୁଣୁ ଗ୍ରୀଷ୍ମଛୁଟି କେବେ ଆସିବ ଭାବି କୁରୁଳି ଉଠୁଥିଲା । ଖାଲି ସେତିକି ନୁହେଁ, ବାପା ତାକୁ ଓଡ଼ିଶାର ଅନେକ ସ୍ଥାନ ବିଷୟରେ କହିଥିଲେ । ଗୋପାଳପୁର ସି ବିଚ୍, ଚିଲିକା ହ୍ରଦର ସୌନ୍ଦର୍ଯ୍ୟ, ମହାନଦୀ, କାଠଯୋଡ଼ି ଇତ୍ୟାଦି ନଦୀର ମନୋରମ ଚେହେରା, ଖଣ୍ଡଗିରି, ଉଦୟଗିରି, ହାତୀଗୁମ୍ଫା, ଶିଶୁପାଳଗଡ଼, ଧଉଳି ଶାନ୍ତିସ୍ତୂପ ଇତ୍ୟାଦି ଇତିହାସ ପ୍ରସିଦ୍ଧ ସ୍ଥାନ । ନନ୍ଦନକାନନ, ଭିତରକନିକା, କପିଳାଶ, ଶିମିଳିପାଳ, ତାରାତାରିଣୀ, ନିର୍ମଳଝର ଇତ୍ୟାଦି ଅନେକ ଦର୍ଶନୀୟ ସ୍ଥାନର ବର୍ଣ୍ଣନା ଶୁଣି ସେ ଆଶ୍ଚର୍ଯ୍ୟ ହୋଇଥିଲା । ଉତ୍କଳର କଳାସଂସ୍କୃତି ଅତି ପୁରାତନ ଓ ମହାନ୍, ଯାହାର ଚିତ୍ରିତ ଚେହେରା ସାରା ପୃଥିବୀର ଲୋକଙ୍କୁ ପାଖକୁ ଟାଣିଆଣେ ।

ବାପା କହିଲେ, ତୁମେ ଆଉଟିକେ ବଡ଼ ହୋଇଗଲେ ଆମ ଓଡ଼ିଶାର ଗର୍ବଗୌରବ ଓ ବୀରପୁତ୍ର, ବରପୁତ୍ରମାନଙ୍କ କୃତିତ୍ୱ ବିଷୟରେ ଜାଣିପାରିବ ।





Digitized by srujanika@gmail.com



# ପପି ଓ ପୁଷି

ପପି ଓ ପୁଷି ସୁଦାମ ବାବୁଙ୍କ ପରିବାରରେ ଦୁଇଟି ଗେହ୍ଲାଜୀବ । ଦୁହିଁଙ୍କ ଭିତରୁ ଜଣକୁ ନ ଦେଖିଲେ ପେଟକୁ ଭାତ ଯାଏ ନାହିଁ କାହାର । ସୁଦାମବାବୁଙ୍କ ପରି ତାଙ୍କ ସ୍ତ୍ରୀ ମନୋରମା ଦେବୀ ମଧ୍ୟ ଭାରି ସ୍ନେହୀ, ଦୟାବତୀ ଓ ପର ଉପକାରୀ ମଣିଷ । ଭାଗ୍ୟକୁ ତାଙ୍କର ପିଲାଛୁଆ ବକଟେ ନାହିଁ । ତେଣୁ ପପି ଓ ପୁଷିଙ୍କୁ ସେ ନିଜର ପୁଅଝିଅଠାରୁ ବେଶି ଶରଧା କରି ଥାଆନ୍ତି ।

ପପି ଖୁବ୍ ପ୍ରଭୁଭକ୍ତ କୁକୁର । ମାଲିକ ମାଲିକାଣୀଙ୍କୁ ବାପା ମାଆ ପରି ମାନେ । ସେମାନେ ନଖାଇଲେ ଖାଏ ନାହିଁ, ମା' ବାବୁଙ୍କୁ ନଦେଖିଲେ ତାକୁ କିଛି ଭଲ ଲାଗେ ନାହିଁ । ବାବୁ ଗାଧୋଇ ଦେବେ, ମା' ଖାଇବାକୁ ବାଢି ପାଖରେ ବସିବେ, ଟିକେ ପିଲାପରି ପପି ଗେହ୍ଲାହବ, ଦେହ ହାତ ଚାଟିବ । ଦିନରାତି ଘର ଚାରିପଟେ ବୁଲି ବୁଲି ପହରା ଦବ ।



Digitized by srujanika@gmail.com

ଏସବୁ ଦେଖି ବିଲେଇ ପୁଷି ମନେ ମନେ ସବୁବେଳେ ପପି ଉପରେ ବିରକ୍ତ ହୁଏ, ତାକୁ ସହିପାରେ ନାହିଁ ଜମାରୁ । ପୁଷି ଭାବେ, ପପି ଯଦି ନଥାନ୍ତା ସେ ବାବୁ ଓ ମାଆଙ୍କ ଠାରୁ ଆହୁରି କେତେ ସ୍ନେହ ମମତା ପାଉଥାଆନ୍ତା । ଆହୁରି କେତେ ଭଲ ଜିନିଷ ଖାଉଥାଆନ୍ତା ।

ପପି କିନ୍ତୁ ପୁଷିକୁ ଦେଖିଲେ ଆନନ୍ଦରେ କୁରୁଳି ଉଠେ । ଭଲ ଖାଦ୍ୟଟିଏ ପାଇଲେ ପୁଷି ପାଇଁ ଖୁଣ୍ଟି ରଖିଥାଏ । ସାଙ୍ଗ ହୋଇ ଖେଳିବା ବୁଲିବା ପାଇଁ ତା' ଭାଷାରେ ଆଦରରେ ଡାକେ । ପୁଷି ତା'ଉପରେ ସଦାବେଳେ ଚିଡ଼ିଚିଡ଼ି ହୁଏ । ଗଦି ଉପରେ ଶୋଇ ଶୋଇ ପପିକୁ ଗାରୁ ଗାରୁ କରି ଗାଳିଦିଏ । ଯେତେ ଭଲ ଖାଇଲେ ପିଇଲେବି ପୁଷି ସୁବିଧା ପାଇଲେ ଚୋରେଇ ଲୁଚେଇ ଖାଇବାକୁ ପଛାଏ ନାହିଁ । ମାଛ, କ୍ଷୀର, କି ଭଲ ଜିନିଷଟିଏ ଦେଖିଲେ ପାଟିରୁ ତା'ର ଲାଳ ଗଡ଼ିପଡ଼େ । କେମିତି ବାଗରେ ଚୁପିଚୁପି ଯାଇ ଖାଇଦେଇ ମୁହଁ ପୋଛି ଗଡ଼ିପଡ଼େ ଜଣାପଡ଼େ ନାହିଁ । ପୁଷିର ଏଇ ଓଲେଇ ପ୍ରକୃତି ଦେଖି ବହୁତ ଥର ବାରଣ କରିଚି ପପି । ଆଖିର ଇସାରାରେ କହିଚି, ଦେଖ୍ ପୁଷି, ତୋର ଏମିତି ଚୋରେଇ ଲୁଚେଇ ଖାଇବା ମୋଟେ ଭଲ କଥା ନୁହେଁ । ମା' ଓ ବାବୁ ତତେ କେତେ ଭଲ ପାଆନ୍ତି ତୁ ତାଙ୍କ ଅଜାଣତରେ ଏମିତି ହୀନ କାମ କରୁଛୁ ! ପୁଷି ଖିଙ୍କାରି ଉଠି ତା' ଭାଷାରେ କହେ ଯା, ଯା, ଭାରି ଭଲଲୋକୀ ଦେଖଉଛି । ଛାର କୁକୁରଟାଏ, ମତେ ଉପଦେଶ ଦଉଚି ।

ପୁଷିର ବ୍ୟବହାରରେ ପପି ମନ ଖୁବ୍ ଦୁଃଖରେ ଭାଙ୍ଗିପଡ଼େ । ତଥାପି ସେ ଭାବେ, ପୁଷି ଦିନେନା ଦିନେ ତା'ର ଏଇ ଖରାପ ଗୁଣ ପାଇଁ ହଇରାଣରେ ପଡ଼ିବ, ଆଉ ସେଇ ଦିନ ଠିକ୍ ବୁଝିବ ମୋ କଥା ।

ପପି ଓ ପୁଷି ଛଡ଼ା ମା' ଗୋଟିଏ ଶୁଆ ପୋଷି ଥାଆନ୍ତି । ପଞ୍ଜୁରୀ ଭିତରେ ରହି ଅନେକ କଥା କହେ ଶୁଆଟି । ସକାଳେ ସଂଜରେ ଠାକୁରଙ୍କ ଜଣାଣ ବୋଲେ । ଘରକୁ ଅତିଥି ଆସିଲେ ଜଣାଇଦିଏ । କାହାର କ'ଣ ଦରକାର, କିଏ କେତେବେଳେ କ'ଣ କରିବ, କ'ଣ ଖାଇବ, ସବୁକଥା ସମୟ ମୁତାବକ ଡ଼ାକିହାକି କହିଦିଏ । ତାକୁ ଖାଲି ଖାଲି ବସିବାକୁ ଭଲ ଲାଗେନି



Digitized by srujanika@gmail.com

ବୋଲି ପପି ଓ ପୁଷି ସାଙ୍ଗରେ ଗପ କରେ । ପପି ଶୁଆକଥା ଶୁଣି ଖୁବ୍ ଖୁସି ହୋଇଯାଏ । ଭାବେ, ଏଡ଼େଟିକେ ଜୀବ, କେତେ ତା'ର ବୁଦ୍ଧି ! ମଣିଷ ପରି ସବୁକଥା କହୁଚି ।

ପୁଷି କେତେ ଥର ସୁରାକ ଉଣ୍ଡି କାନ୍ଥରେ ଚଢ଼ି ଟଙ୍ଗାହୋଇ ଥିବା ପଞ୍ଜୁରୀ ଭିତରୁ ଶୁଆଟିକୁ ଭିଡ଼ି ଆଣିବାକୁ ଚେଷ୍ଟା କଲାଣି । ମାତ୍ର ପପି ପାଇଁ ବଞ୍ଚିଯାଇଚି ଶୁଆଟି । ଛକି ଛକି ଶୁଆର ଲମ୍ବ ଲାଞ୍ଜକୁ ଭିଡ଼ିବା ପାଇଁ ଚେଷ୍ଟା କଲାବେଳେ ଭୋ, ଭୋ, ଭୁକି ଉଠି ଜଣାଇ ଦିଏ ପପି ପୁଷିର ସବୁ ଚେଷ୍ଟା ପାଣିଫାଟିଯାଏ ।

ଥରେ ସୁଦାମ ବାବୁ ଚିଲିକା ବୁଲି ଯାଇଥିଲେ, ସେଠାରୁ ଧୋବଫରଫର ହଂସ ପୁଞ୍ଜିଏ କିଣି ଆଣିଲେ । ବଡ଼ ଫୁଲ ବଗିଚା ଭିତରେ ଏତେବଡ଼ ପାଣି କୁଣ୍ଡରେ ହଂସମାନଙ୍କୁ ଛାଡ଼ି ଦିଆଗଲା, ସେମାନେ ମନଖୁସିରେ ପହଁରି ପହଁରି, ବୁଡ଼ି ବୁଡ଼ି, ଖେଳୁଥାଆନ୍ତି । ନାଲି ନାଲି ଥଣ୍ଟ, କୁନି କୁନି ଆଖି ମଖମଲ ପରି କି ସୁନ୍ଦର ନରମ ଚିକ୍କଣ ଦିହ ! ବଗିଚାରେ ଚଉକି ଉପରେ ବାବୁଙ୍କ କୋଳରେ ବସି ପପି ସେମାନଙ୍କ ଖେଳ ଦେଖେ, ଆଉ ମା'ଙ୍କ କୋଳରେ ପଶିଥାଏ ପୁଷି ।

ରାତିହେଲେ ହଂସମାନେ ଡ଼ବଲରେ ତିଆରି ଘରଭିତରେ ରହନ୍ତି, ପୁଣି ସକାଳ ହେଲେ ପାଣି କୁଣ୍ଡରେ ପହଁରି ପହଁରି ଖେଳନ୍ତି ।

ପୁଷି ଭଲ ଆଖିରେ ଏଇ ସବୁ ଦୃଶ୍ୟ ଦେଖି ପାରେ ନାହିଁ । ତା'ର ପାଟିରୁ ଲାଳ ପଡ଼େ । ହଂସମାନଙ୍କ ପହଁରିବା ବେଳେ ଅନେକଥର ଛକିଛି, କିନ୍ତୁ କ'ଣ କରିବ, ପାଣିକୁ ତ ତା'ର ପ୍ରାଣେ ଭୟ । ସବୁବେଳେ ମନ ତା'ର ଯାଇ ହଂସମାନଙ୍କ ପାଖରେ ।

ବର୍ଷାଦିନ ଆସିଲା, ହଂସମାନଙ୍କର ଅଣ୍ଡାଦେବା ବେଳ ଆସିଗଲା । ଚାରୋଟି ଯାକ ହଂସ ଅଣ୍ଡାଦେବାକୁ ଆରମ୍ଭ କଲେ । ମା' ବାବୁଙ୍କ ଆନନ୍ଦ କହିଲେ ନସରେ । ବହୁତ ଯତ୍ନରେ ଜଗିରହି ଏକୋଇଶି ଦିନପରେ ଅଣ୍ଡାରୁ ଛୁଆ ଫୁଟାଇଲେ ହଂସ । ଟିକିଟିକି ହଂସ ଚିଆଁ ଢାଲି ଭିତରେ କିଚିରି ମିଚିରି



Digitized by srujanika@gmail.com

ହେଉଥାଆନ୍ତି । ରାତିଦିନ ନିଦ ନାହିଁ ପୁଷିର । କଅଁଳ ଚିଆଁମାଉଁସ ଖାଇବାକୁ ତା'ର ଭାରି ଲୋଭ । ଚିଆଁକୁ ଛାଡ଼ି ହଂସ ପାଣିକୁ ଗଲାବେଳେ ସୁବିଧା ଉଣ୍ଡି ଗୋଟିଏ ଗୋଟିଏ ଚଳେଇଦିଏ ପୁଷି । ଏକଥା କେହି ଜାଣି ପାରନ୍ତି ନାହିଁ । କିନ୍ତୁ ପପିର ଆଖିକୁ ଫାଙ୍କିବାକୁ ଯାଇ ଦିନେ ଧରାପଡ଼ିଗଲା ପୁଷି । ପପିର ଚିତ୍କାର ଶୁଣି ଧାଇଁଅଇଲେ ମାଆ । ଚୁପ୍‌କିନା କିଛି ନଜାଣିଲା ପରି ପୁଷି ଧାଇଁ ଯାଇ ମାଆଙ୍କ ଦେହରେ ଘଷି ହେଲା । ସେଦିନ ପୁଷିକୁ କିଛି ଦଣ୍ଡବି ମିଳିଲା । କିନ୍ତୁପାଟିରୁ ତା'ର ହଂସ ଚିଆର ସୁଆଦ ସହଜରେ ଛାଡ଼ିଚି କେଉଁଠି ? ଓଲେଇମନ ଜମାରୁ ସମ୍ଭାଳି ହଉନାହିଁ । ମା' ନଥିଲା ବେଳେ ପୁଣି ଗୋଟିକୁ ଛକି ଛକି ମାଡ଼ି ବସିଲାବେଳକୁ ପପି ଯାଇ ମାଡ଼ି ବସିଲା ପୁଷିର ତଣ୍ଟିକୁ । ତା'ପରେ ବାଧ୍ୟ ହୋଇ ପୁଷି ଛାଡ଼ିଦେଲା ହଂସ ଛଆଟିକୁ । ପପି ଏଥର ପୁଷିକୁ ଛାଡ଼ି ଦେଇ କହିଲା, ଆଉ ଦିନେ ଯଦି ଏପରି କାମ କରିବୁ, ତତେ ଜୀବନରେ ମାରିଦେବି । ଏକ ଶିଂଘି ପୁଷି ରାଗରେ ଜଳୁଥାଏ । ଉପାୟ ପାଞ୍ଚୁଥାଏ, କେମିତି ଭଲ କରି ପାନେ ଦବ ପପିକୁ ।

ଶୀତଦିନ ସଂଜବେଳେ । ଘୋଡ଼ିପୋଡ଼ି ହୋଇ ଶୋଇଛି, ବାରଣ୍ଡାରେ ପପି । ଦେହରେ ତା'ର ତିନି ଦିନ ହେଲା ଜର । ଖିଆ ପିଆ ନାହିଁ । ହାଲିଆ ହୋଇ ପଡ଼ିଛି ଯେ ବାବୁ ଯାଇଛନ୍ତି ଡାକ୍ତରଙ୍କ ପାଖକୁ, ମାଆ ରୋଷଘରେ ବ୍ୟସ୍ତ । ଏଇ ସମୟରେ ଜଳନ୍ତା ସଂଜବତୀଟିକୁ ଗୋଡ଼ରେ ଭିଡ଼ି ଭିଡ଼ି ନେଇ ପପି ବିଛଣାରେ ପକାଇଦେଲା ପୁଷି, ହାଉହାଉ ଜଳି ଉଠିଲା ସବୁ । ପପି ଜୀବନ ବିକଳରେ ଭୋ' ଭୋ' ହେଲା ବେଳକୁ ଧାଇଁ ଆସିଲେ ମାଆ । କିଛି ବାଟ ଛଡ଼ାରେ ବସି ମନଖୁସିରେ ଦେଖୁଥାଏ ପୁଷି । ଭାବୁଥାଏ, ଆଜି ପପିର ଦାଉ ସରିଲା ।

କିନ୍ତୁ ପପି ଅଳ୍ପକେ ବଂଚିଗଲା, ବହୁ ସେବା ଯତ୍ନ ପରେ । ପପି ଦେହ ଭଲ ନଥିବାରୁ ଘର କାହାର ମନ ଭଲନଥାଏ, ଏପରିକି ଛୋଟ ଶୁଆଟି ମଧ୍ୟ ଆହାର ଛାଡ଼ି ଦେଇଥାଏ, ସେଇ କେତେଦିନ । ଏଥର ପପି ପୂରାପୂରି ସୁସ୍ଥ ହୋଇ ଉଠିଲା । କିପରି ପପିର ଏତେବଡ଼ ଦୁର୍ଘଟଣା ହେଲା, କେହି ତା'ର



Digitized by srujanika@gmail.com

ଟେର୍ ପାଇଲେ ନାହିଁ । ତଥାପି ପୁଷିର ମନରୁ ହିଂସା ଯାଉନଥାଏ । ପପି ଉପରେ ପୁଷି ଦିନକୁ ଦିନ ରୁକ୍ଷ ଓ ନିଷ୍ଠୁର ହୋଇ ଉଠୁଥାଏ । ମାତ୍ର ପପି ? ପପି କିନ୍ତୁ ପୁଷିର ଭଲ କାମନା କରୁଥାଏ ଦିନରାତି । ମନେ ମନେ ଠାକୁରଙ୍କୁ କହେ, ପୁଷିକୁ ତମେ ଭଲ ବୁଦ୍ଧି ଦିଅ ।

ବହୁତ ଦିନ ଚାଲି ଯାଇଛି । ପୁଷି ଏଥର ନୂଆ କରି ମାଆ ହେଲା । ଦିଓଟି ରୁମୁରୁମିଆ ଛୁଆ କୋଳକୁ ଓହ୍ଲେଇ ଆସିଲେ ପୁଷିର । ଧଳାଦିହରେ କଳାକଳା ଟୋପା ଭାରି ମାନୁଥାଏ ଛୁଆ ଦିଇଟାଙ୍କୁ । ପୁଷିର ଆନନ୍ଦ କହିଲେ ନସରେ, ଘରେତ ଖାଲି ଆନନ୍ଦର ସୁଅ ଛୁଟିଲା । ମାଆ ମିଠେଇ ବାଣ୍ଟିଲେ ସାଇ ପଡ଼ିଶାରେ । ପପି ଛୁଆମାନଙ୍କୁ ଦେଖି କୁରୁଳି ଉଠୁଥାଏ । କେତେ କ'ଣ ତା' ଭାଷାରେ ଖୁସିରେ କହି ଦଉଥାଏ ।

ମା' ବାବୁ ସମସ୍ତେ ଲାଗି ଥାଆନ୍ତି ପୁଷିର ସେବାରେ । ଛୋଟ ଛୁଆଙ୍କୁ କୋଳରେ ଧରି ଆଲ୍‌ମାରି ସନ୍ଧିରେ ଲୁଚି ବସିଥାଏ ପୁଷି, ଦିନରାତି ସେମାନଙ୍କୁ ଏତେଟିକେ ପାଖ ଛଡ଼ା କରୁନଥାଏ । ଏକୋଇଶି ଦିନ ପରେ ଛୁଆମାନଙ୍କ ଆଖି ଫିଟିଲା, ଘରଭିତରେ ଏଣେ ତେଣେ ମିଇଁ ମିଇଁ ହେଇ ଗୁରୁଣ୍ଡିଲେ । ପୁଷି ଏଥର ବାହାରକୁ ଗଲା ଆହାର ଖୋଜିବାକୁ ।

ପୁଷି ନଥିଲା ବେଳେ ପପି ସେଇ କୁନି ଛୁଆ ମାନଙ୍କୁ ଦେଖେ, ତାଙ୍କ ସାଙ୍ଗରେ ମନଭରି ଖେଳ କଉତୁକ କରେ । ଧୀରେ ଧୀରେ ଛୁଆମାନେ ବଡ଼ ହୋଇ ଉଠୁଥାଆନ୍ତି । ବାହାରକୁ ଖେଳି ବୁଲି ଯିବାକୁ ଚଗ ଚଗ ହେଉଥାଆନ୍ତି ।

ଏମିତି ଦିନେ ଛୁଆମାନେ ବାଡ଼ିପଟେ ଖେଳୁଥିଲେ । ପୁଷି ଘରେ ନଥିଲା । କେଉଁଠୁ ଆସିଲା କେଜାଣି, ଏତେବଡ଼ ବଣ କଟାସ ଏକା କୁଦାକେ ମାଡ଼ି ବସିଲା କୁଲୁକୁଲିଆ ପୁଷି ଛୁଆ ଦୁଇଟିଙ୍କୁ । ସେମାନଙ୍କ ବିକଳ ମେଉଁ ମେଉଁ କାନ୍ଦଣା ବାଡ଼ି କଂପେଇଦେଲା । ପପିକୁ ଦେଖେ କିଏ, ବାଘୁଣୀ ପରି କୁଦିପଡ଼ିଲା କଟାର ଉପରକୁ । ଛୁଆ ଦିଇଟାଙ୍କୁ ଛାଡ଼ି ଖଣ୍ଡିଆ ଖାବରା ହୋଇ ପପି କବଳରୁ ଜୀବନ ବିକଳରେ ଖସିଗଲା କଟାସ । ପପି କିପରି ଛୁଆଙ୍କୁ ବଂଚେଇବ



Digitized by srujanika@gmail.com

ସେଥିପାଇଁ ନମାରି ଛାଡ଼ିଦେଲା ତାକୁ । ଛୁଆମାନେ ଖୁବ୍ ଡରି ଯାଇଥିଲେ । ଦିହରୁ ଠାଏ ଠାଏ ରକ୍ତ ଝରୁଥିଲା । ସେମାନଙ୍କୁ କୋଳରେ ପୂରାଇ ଖଣ୍ଡିଆ ଜାଗାକୁ ଚାଟିବାରେ ଲାଗିଲା ଏବଂ କଅଁଳ ସ୍ୱରରେ କ'ଣ କହିଲା କେଜାଣି ଛୁଆମାନେ ତା' କୋଳ ଭିତରେ ଜାକିଜୁକି ଆରମରେ ଶୋଇ ପଡ଼ିଲେ ।

ପୁଷି ଫେରି ଆସି ଛୁଆଙ୍କୁ ନପାଇ ବିକଳ ହୋଇ ଏପଟ ସେପଟ କେତେ ଖୋଜିଲା । ଶେଷରେ ଦେଖିଲା ପପି କୋଳରେ ଛୁଆଦିହେଁ ଜୁଳୁଜୁଳୁ ଚାହୁଁଛନ୍ତି କିନ୍ତୁ ପୁଷି ଯେତେ ଡାକିଲେବି ବାହାରୁ ନାହାନ୍ତି । ପପି ସେମାନଙ୍କୁ ଆଣି ପୁଷି ପାଖରେ ଛାଡ଼ିଦେଇ କ'ଣ କହିଲା କେଜାଣି ସବୁକଥା ସତେଯେମିତି ବୁଝିପାରିଲା ସେ । ପପି ପାଇଁ ଆଜି ତା'ର ଛୁଆ ଦିହିଁଙ୍କର ଜୀବନ ରହିଲା, କ'ଣ ଦେଇ ପପିର ଋଣ ଶୁଝିବ ସେ ? ପପି ଉପରେ ସେ ଯେଉଁ ଅନ୍ୟାୟ ଅତ୍ୟାଚାର କରିଛି, ତା'ର କ'ଣ ସୀମା ଅଛି ? କେଉଁ ମୁହଁରେ ପପିକୁ ସେ କ୍ଷମା ମାଗିବ ? ଲୁହ ଛଳ ଛଳ ଆଖିରେ ପପି ମୁହଁକୁ ଚାହିଁ ମେଉଁ ମେଉଁ ଭାଷାରେ ସତେ ଅବା କହିଲାଗିଲା, ପପି ! ସତରେ ମୋ ଉପରେ ରାଗିନାହୁଁ, ତୁ କେତେ ଭଲରେ ପପି !! ମତେ ଯାହା ଦଣ୍ଡ ଦବୁ ଦେ ।





Digitized by srujanika@gmail.com



# ମହନିର ମାଛ

ବନିଶୀ ଖାଡ଼ିଟିକୁ ନଈ ଅତଡ଼ି ଦେହରେ ଜୋରରେ ପୋତିଦେଇ ବାପା କହିଲେ ମହନି; ଖାଇ ପାଖରେ ରହିକି, ମୁଁ ଗୋରୁ ଗାଈ କାମ ସାରି ଘରୁ ମୁଠାଏ ଖାଇ ଦେଇ ଆସେ । ସଞ୍ଜ ହେଉ ଆସୁଛି, ଲଣ୍ଠନଟା ଲଗେଇ ତୁ ଖାଡ଼ିକୁ ଅନେଇଥିବୁ । ମାଛ ଯେତେବେଳେ ଆସି ଥୋପ ଗିଳିବ, ସେତିକି ବେଳେ ଖାଡ଼ିକୁ ଭିଡ଼ି ଆଣିବୁ ।

ଶୀତୁଆ ପବନ ଦିହକୁ କାଲୁଆ କରି ଦେଉଥିଲା । କମ୍ବଳଟା ମୁଣ୍ଡରୁ ଗୋଡ଼ ଯାଏ ଘୋଡ଼ି ହୋଇ ଚୁପ୍‌ଚାପ୍ ବସି ରହିଲା ମହନି । ଏବେ ନଈକୁ ଖୁବ୍ ବଡ଼ ବଡ଼ ଭେକେଟି ମାଛ ଆସୁଛନ୍ତି । ଭେକେଟି ଗୁଡ଼ିକ ଜାଲକୁ ମାନିବେ ନାହିଁ । ସେଗୁଡ଼ାକ ବଡ଼ ରଙ୍କାଳିଆ ଓ ବୋକା ବୋକା ଥୋପ ସାଙ୍ଗରେ ଏତେ ବଡ କଣ୍ଟାକୁ ଏକା ସାଙ୍ଗରେ ଗିଳିଦେଇ ଆପେ ଆପେ ଧରା ପଡ଼ିଯାଆନ୍ତି । ବେଳେବେଳେ ଖାଡ଼ି ନେଇ ମଝିନଈରେ ମାରନ୍ତି । ଆଉ ବେଳେବେଳେ ଖାଡ଼ି ସଙ୍ଗେ ମଣିଷବି ଭିଡ଼ି ହେଇଯାଏ ।

ଆଜି ଦି'ଟା ଖାଡ଼ିରେ ଯଦି ଦିଇଟା ପଡନ୍ତେ ସକାଳୁ ସକାଳୁ ଭଲ



Digitized by srujanika@gmail.com

ଗୋଟେ ରୋଜଗାର ହୁଅନ୍ତା । ବାପାଙ୍କୁ କହନ୍ତା, ନୂଆ ପେଣ୍ଟ୍ କରୁତା ହଲେ କିଣିଦେଲେ ସେ ମକର ଯାତ ଦେଖି ଯାଆନ୍ତା । ନୂଆ ନୂଆ ଜିନିଷ କିଣନ୍ତା । ଏଇ ମାଛ ବେପାର ତାଙ୍କର ଚଳିବାର ସବୁଠାରୁ ବଡ଼ ଉପାୟ । ବାପା ମାଆଙ୍କ ସାଙ୍ଗକୁ ମହନି ଓ ରୂପେଲି ଭାଇ ଭଉଣୀ ମନ ଖୁସିରେ ଚଳି ଯାଆନ୍ତି । ଜମି ବାଡ଼ି ସେପରି କିଛି ନାହିଁ । ଥିଲେବି କିଏ ସେ କାମ କରନ୍ତା । ବାହା ପୁଆଣୀ, ଭୋଜି ଭିତରେ ମାଛ ଦର ହୁ ହୁ ବଢ଼ିଯାଏ । ସେତିକିବେଳେ ମହନି ବାପାଙ୍କର ଭଲ ଦିଇ ପଇସା ଲାଭହୁଏ । ବାପାଙ୍କଠାରୁ ଶୁଣିଛି ମହନି, ଏବର୍ଷ ଭଲ ପାଳକ ଅଛି, ଦିଇ ପଇସା ସଞ୍ଚିଲେ ଆର ବରଷକୁ ରୂପେଲିର ବାହାଘର ହେବ । ମହନି ଗାଁ ଇସ୍କୁଲରୁ ପାଠପଢ଼ା ସାରି ବଡ଼ ଇସ୍କୁଲରେ ନାଁ ଲୋଖାହେବ । ବାପାଙ୍କ ଇଚ୍ଛା; ମହନିକୁ ପାଠ ପଢ଼େଇ ବାବୁ କରିବ । ସେ ଆଉ ମୂରୁଖ ମଣିଷ ହୋଇ ନଈକୂଳେ ମାଛ ଧରିବ ନାହିଁ । ମହନି ଭାବିଲା ସତରେ ସେ ଏତେବଡ଼ ବାବୁଟାଏ ହବ ? ଯାହା ହେଲେତ ତା'ଗାଆଁର ଧୂଳିମାଟି ଦିହ । ତା' ନଈର କୁଳୁ କୁଳୁ ମିଠା ଗୀତ; ତା' ଗାଆଁର ଗଛ ଲଟା, ଫୁଲ ଫଳ, ସାଙ୍ଗ ସାଥୀ କାହାକୁ ସେ ପରକରି ପାରିବ ନାହିଁ । ବହୁତ ପାଠ ପଢ଼ି ବଡ଼ ହେଲେବି ଏଇ ନଈରୁ ସେ ଯନ୍ତ୍ର ସାହାଯ୍ୟରେ ମାଛ ମାରିବ । ପୁଣି ବଡ଼ ବଡ଼ ପୋଖରୀ ଖୋଳେଇ ମାଛ ଚାଷ କରିବା । ସେତେବେଳେ ମାଛ ପାଇଁ ତାଙ୍କୁ ପଙ୍କ କାଦୁଅରେ ଘାଣ୍ଟିହୋଇ ଶୀତରେ ନଈକୂଳେ ପଡ଼ିବାକୁ ହେବନାହିଁ । ପେଣ୍ଟ, କୁରୁତା, ଜୋତା, ମୋଜା ପିନ୍ଧି ଲଞ୍ଚ ଉପରେ ବସି କଳ ଜାଲରେ ମାଛ ଧରିବା । ସେଇ ମାଛ ଦେଶ ବିଦେଶକୁ ପଠାଇ ବହୁତ ଟଙ୍କା ରୋଜଗାର କରିବ । ତାଙ୍କର ଏଇ ଚାଳ ଛପର ଘର ଆଗରେ ଠିଆ କରିଦେବ ଆକାଶ ଛୁଆଁ କୋଠାଘରଟିଏ ।

ଏମିତି ଅନେକ କଥା ଭାବୁ ଭାବୁ କେତେବେଳେ ଢ଼ୋଳେଇ ପଡ଼ିଚି ମହନି । କେତେବେଳୁ ବଡ଼ ଭେକେଟି ମାଛଟିଏ ବନିଶୀରୁ ଥୋପ ଗିଳି କାଢ଼େଇ ପିଟି ହେଉଛି । ଭାଗ୍ୟକୁ ବାପା ଆସି ପହଁଚିଗଲେ ବୋଲି ସିନା ନହେଲେ ଖାଡ଼ି ଉପାଡ଼ି କଉଁ ମଝି ନଈ ଗଣ୍ଡକୁ ଚାଲି ଯାଇ ଥାଆନ୍ତା ମାଛଟି ।



Digitized by srujanika@gmail.com

ମହନିକୁ ହଲେଇ ଦେଇ ବାପା କହିଲେ ଉଠ୍ ଉଠ୍ । ଦେଖିଲୁ କେତେବଡ଼ ପୋଟେଇ ମାଛ । ଚାଲ ଏଥର ଘରକୁ ଯିବା । ଚାଉଁକରି ନିଦ ଭାଙ୍ଗିଗଲା ମହନିର । ସେ ଆଖି ମଳି ଧଡ଼ ପଡ଼ ହୋଇ ଉଠି ବସିଲା । ତାକୁ ସବୁ କଥା ସପନ ପରି ମନେହେଲା । ମାଛକୁ ବାହୁଙ୍ଗିରେ ଲଟକାଇ ଆଗେ ଆଗେ ବାପା ଚାଲୁଥାନ୍ତି । ବନିଶୀ ଖାଡ଼ି କାନ୍ଧରେ ପକାଇ ସେ ଚାଲିଥାଏ ପଛେ ପଛେ । ତା'ମନ ଖୁସିରେ ଉଚ୍ଛୁଳି ଉଠୁଥାଏ । ଏତେବଡ଼ ମାଛ କେଉଁଦିନ ଦେଖିନଥିଲା ସେ । ମାଛକୁ ଦେଖୁ ଦେଖୁ ମହନି ମା' କହିଲେ, ଏତେବଡ଼ ମାଛ ! ଏଇଟି ନିଶ୍ଚେ ଶହେ କି ଦେଢ଼ ଶହ ବିକ୍ରି ହେବ । ଯାହାହେଉ, ମାସକର ଖର୍ଚ୍ଚ ଚଳିଯିବ ।

ମହନିର ବାପା କହିଲେ ନା, ନା, ଆଜି ସେକଥା ହବନି । ସବୁ ଦିନେତ ମାଛ ଧରି ହାଟରେ ବିକା ହେଉଛି । ଆଜି ଏଇଟିକୁ କାଟି ସାଇ ପଡ଼ିଶାଙ୍କୁ କିଛି କିଛି ବାଣ୍ଟିବା, ଅବଶିଷ୍ଟ ଆମେ ରାନ୍ଧି ଖାଇବା । ପିଲାମାନେ କେଉଁଦିନ ବି ବଡ଼ ମାଛଟିଏ ଖାଇପାରୁ ନାହାନ୍ତି ମନ ପୂରାଇ । ଏଇ ମାଛଟି ନିଶ୍ଚୟ ବହୁତ ସୁଆଦ ଲାଗିବ ।

ଏକଥା ଶୁଣି ମାଆଁଙ୍କ ମୁହଁ ଟିକିଏ ଶୁଖିଗଲା । ପନିକି ପକାଇ ମାଛଟିକୁ କାଟିବା ପାଇଁ ବସିପଡ଼ିଲେ ବାପା । ମନଖୁସିରେ ଘେରି ବଦିଲେ ରୂପା ଓ ମହନି । ମାଛଟିକୁ ଦୁଇଗଡ଼ କରି ଚମକି ପଡିଲେ ସେ । ଏକି ଅଦ୍ଭୁତ କଥା ଦେଖୁଛ ? ଆଜି ସେ ! ମାଛ ପେଟକୁ ଏତେବଡ଼ ସୁନାହାର ଆସିଲା କେଉଁଠୁ ଧାଇଁ ଯାଇ ଗାଁ ଲୋକଙ୍କୁ ସବୁକଥା କହିଲେ ବାପା । ସମସ୍ତେ କହିଲେ, ତୋ'ର ମେହେନତିର ଫଳ ଠାକୁର ତୋ' ହାତେ ଦେଇଛନ୍ତି, ଏଥର ତୋର ସବୁ ଦୁଃଖ କଟିଗଲା । ମାଛକୁ ଖାଇ ସମସ୍ତେ ଧନ୍ୟ ଧନ୍ୟ କଲେ ।

ହାରଟିକୁ ଦଶହଜାର ଟଙ୍କାରେ କିଣିନେଲେ ଗାଁର ବଡ଼ ଜମିଦାର ।

ସେଇବର୍ଷ ରୂପାର ବାହାଘର ଓ ମହନିର ବଡ଼ ଇସ୍କୁଲରେ ନାଁ ଲେଖା କାମ ସୁରୁଖୁରୁରେ ହୋଇଗଲା ।





Digitized by srujanika@gmail.com



# ରାଗରୁଷା ମେଣ୍ଟିଲା

ଘର ଗୋଟାକର ସବୁ କାମ ସାରି ସଞ୍ଜ ପହରୁ କାହାଣୀ ପେଡ଼ି ଖୋଲିଦେଇ ବସିପଡ଼ନ୍ତି ଜେଜେମା' । ତାଙ୍କ ଚାରି କଡ଼ରେ ଘେରି ବସିଥାଆନ୍ତି ସାଇପାକର କୁନି କୁନି ପୁଅ ଝିଅ । ପାନଖିଆ ଚାଲିଥାଏ ଆଉ ଅସରନ୍ତି ଗପ ଲମ୍ବିଯାଉଥାଏ ଗଙ୍ଗାରୁ ଗୋଦାବରୀ ଯାଏ । ଏଇ ହଉଚି ନିତିଦିନିଆ କଥା । ତେବେ କେହି ଦେଖି ନାହିଁ ଜେଜେମା'ଙ୍କ ଗପଝୁଲିଟି କେବେ ଖାଲି ହୋଇଯିବା । ସେ ଝୁଲିରେ ମହାଭାରତ, ରାମାୟଣଠାରୁ ବୁଢ଼ୀ ଅସୁରୁଣୀ, ଚୁଆଁଚୁଇଁ ଓ ଦରିଆପାରି ଦେଶମାନଙ୍କର ଅଜବ କାହାଣୀମାନ ଭରି ରହିଥାଏ ।

ସେଦିନ କିନ୍ତୁ ଜେଜେମା ଟିକେ ଥକି ପଡ଼ିବା ପରି ଜଣାପଡୁଥିଲେ । ପାଟିରେ ପାନଖିଲର ନାଲି ନଥିଲା କି ଓଠରେ କୁଲୁବୁଲିଆ ହସ ନ ଥିଲା । ସୋନା, ମୋନା, ଟିପୁନ, ପୁପୁନ ଇତ୍ୟାଦି ପିଲାମାନେ ଘଟଣା କିଛି ବୁଝି ନ ପାରି ମନମାରି ବସି ରହିଲେ । ଜେଜେମା'ଙ୍କ ବିରସଭାବ ସମସ୍ତଙ୍କ ମନକୁ



Digitized by srujanika@gmail.com

ଛୁଇଁଗଲା । ସେମାନେ ଅନୁଭବ କଲେ ନିଜ ଭିତରେ କିଛି ଅଘଟଣ ଘଟିଯାଇଛି ଅବା ।

ଜେଜେମା' କହିଲେ- ପିଲାଏ ! ତୁମେମାନେ ସବୁ ଘରକୁ ଯାଅ, ମୋ ଦେହ ଆଜି ଭଲ ନାହିଁ । ଗପ କହି ପାରିବିନି ଜମାରୁ ।

ଆଶ୍ଚର୍ଯ୍ୟ କଥା ! ଜେଜେମା'ଙ୍କର ଦେହ ଖରାପ, ଏମିତି ଅଘଟଣ କଥା ତ କେବେ ଶୁଣି ନଥିଲେ କେହି । ପିଲାମାନଙ୍କ ଆଖି ଛଳଛଳ ହୋଇଗଲା ଜେଜେମା'ଙ୍କ ଦୁଃଖରେ । ସମସ୍ତେ ଏକା ସ୍ୱରରେ କହିଲେ- ହେ ଭଗବାନ ! ତମେ ଆମ ଜେଜେମା'ଙ୍କୁ ଚଞ୍ଚଳ ଆରୋଗ୍ୟ କରିଦିଅ । ତାଙ୍କଠାରୁ କାହାଣୀ ଶୁଣିବାରୁ ଆମକୁ ବଞ୍ଚିତ କରନି ଠାକୁର । ତାଙ୍କପରି ଆମମାନଙ୍କର ଏତେ ଆପଣାର, ଏତେ ଆଦରର କେହି ନାହିଁ ।

ଶିବୁନ, ସାନୁ, ପପୁନ କିନ୍ତୁ ଅସଲ କଥାଟି ଜାଣିପାରୁଥିଲେ । ପ୍ରକୃତରେ ଜେଜେମା'ଙ୍କ ଦେହ ଖରାପ ନୁହେଁ, ମନଟି ଖୁବ୍ ବିଗଡ଼ି ଯାଇଛି । ସେମାନେ ଛପି ଛପି ଜେଜେ ଓ ଜେଜେମା'ଙ୍କ କଥା ଟଣାଟଣି, ମନ ଫଟାଫଟି କଥା ଶୁଣିଥିଲେ । କଥାଟା ହେଉଛି ଜେଜେମା' ଟିକେ ସଉକିନୀ ମଣିଷ । ବଜାରରେ ଯେଉଁ ନୂଆ ଶାଢ଼ୀ, ଗହଣା ଇତ୍ୟାଦି ବାହାରିବ, ସେଇଟିକୁ ସବା ଆଗେ ପିନ୍ଧିବାକୁ ଇଚ୍ଛା କରନ୍ତି ଓ ଜେଜେ ମଧ୍ୟ ବରାଦ ମୁତାବକ ଯୋଗାଇ ଦିଅନ୍ତି । ତେଣୁ ସବୁ ଫେସନ ଜେଜେମା'ଙ୍କ ଠାରୁ ଆରମ୍ଭ ହୋଇସାରିଲେ ଅନ୍ୟ ଯିଏ ପିନ୍ଧୁଥାଉ । ନୂଆ ଭୁଆସୁଣୀ ପରି ଅଳଙ୍କାର, ଶାଢ଼ୀ, ଚୁଡ଼ିରେ ମଣ୍ଡି ହୋଇ, ଝୁମୁରୁ ଝୁମୁରୁ କରି ଏ ଦୁଆରୁ ସେ ଦୁଆର ଗରବରେ ଛାତି ଫୁଲାଇ, ପାନ ଖିଲ ଚାକି ସେ ଚାଲୁ ଥାଆନ୍ତି । ଜେଜେ ମଧ୍ୟ କେତେଥର ଜେଜେମା'ଙ୍କ ରୂପ ଗୁଣର ତାରିଫ କରିବା ଶୁଣିଛନ୍ତି ପିଲାମାନେ ।

ସେଦିନର କଥା ଟିକେ ଅଲଗା ପ୍ରକାର ଘଟିଗଲା । ଜେଜେ ଜମିଜମା କେଶ୍‌ରେ କଟକ କୋର୍ଟକୁ ଯାଇ ଫେରିଥାଆନ୍ତି । ଠିକ୍ ଗୋଡ଼ ହାତ ଧୋଇ ଖାଇବା ଥାଳିରେ ବସୁ ନ ବସୁଣୁ, ପାନ ଭାଙ୍ଗୁ ଭାଙ୍ଗୁ ଜେଜେମା'ଙ୍କ ବରାଦ



Digitized by srujanika@gmail.com

ତାଳିକା ଫିଟିପଡ଼ିଲା । ଓଠରେ ହସଟିଏ ଚହଟାଇ ଦେଇ କହିଲେ, ମୁଁ କ'ଣ କହୁଥିଲି କି, ତମେ କଟକ ଗଲ ଯେ, ମତେ ଟିକେ କହିଲ ନାହିଁ । ଆଜିକାଲି ଯେଉଁ ପଥରବସା ସୁନା କାନ ଝୁମୁକା ବଜାରକୁ ଆସିଛି, ସେଇଥିରୁ ହଳେ ଆଣିବା ପାଇଁ କହିଥାଆନ୍ତି । କେଉଁ କାଳର ଫୁଲ ହଳକ ପିନ୍ଧି ମତେ ଭାରି ଅଡୁଆ ଲାଗୁଛି । ସେ ଯାହାହେଉ, ଆସନ୍ତା ଥରକୁ ଯେମିତି ହେଲେ ମତେ ଆଣି ଦବ । ନହେଲେ କଥାବାର୍ତ୍ତା ବନ୍ଦ୍ ତମ ସାଙ୍ଗରେ । ଅନ୍ୟ ଦିନ ହୋଇଥିଲେ ହସି ହସି ଢେଙ୍କେ କହିଥାଆନ୍ତେ ଆଚ୍ଛା, ଆଚ୍ଛା ଏଇ କଥା ତ, କାଲି ଆଣିଦେବି ।

ଏଥର କିନ୍ତୁ ସେପରି ହେଲା ନାହିଁ । କାରଣ ମୋକଦ୍ଦମାର ରାୟଟା ଶତ୍ରୁ ଲୋକ ଆଡ଼କୁ ଢଳିଯାଇ ଥିବାରୁ ଢେଙ୍କେଙ୍କ ମଥା ଏକଦମ ବିଗିଡ଼ିଯାଇଥାଏ । ଯାହେ଼ ପୁଣି ଢେଙ୍କେମାଆଙ୍କର ଓଜନଦାର ବରାଦ । କଟାଘା'ରେ ଚୂନ ଲାଗିଗଲା ସତେକି । ରାଗ ଗରଗର ହୋଇ ଭାତ ଥାଳି ଛାଡ଼ି ଉଠି ପଡ଼ିଲେ ଢେଙ୍କେ । ତା'ପରେ ପାଟିକୁ ଯାହା ଆସିଲା, ବକିଗଲେ ବହେ । ବୁଢ଼ୀକାଳେ ଆହୁରି ସଉକି ଦେଖ । କାନ ଝୁମୁକା, ନାକଫୁଲ-ଆହୁରି କ'ଣ କହୁନ । ସତେଯେମିତି ସବାରିରେ ବସି ଶାଶୂଘର ଯିବେ । ବୋପା ଅମଳରେ ତ ଦେଖି ନ ଥିଲା । ଏଠି ଦିନକୁଦିନ ମୁହଁ ବଢ଼ି ଯାଉଛି ବରାଦ ମୁତାବକ ଯୋଗାଇ ଦେଲାରୁ ।

ଏକଥା ଶୁଣି ଢେଙ୍କେମା' କି ଆଉ ସମ୍ଭାଳ ପଡ଼ନ୍ତି । ବାପଘର ନାଁ ଧରିଲେ ତାଙ୍କର ସବୁକିଛି ବିଗିଡ଼ିଯାଏ । ସେ ବି ଛାଡ଼ିଲେ ନାହିଁ । ଢେଙ୍କେଙ୍କ ଚଉଦପୁରୁଷ ପିଣ୍ଡ ବାଢ଼ିଗଲେ । ତା'ପରେ ଚାଲିଲା ଦୁଇଆଡୁ କଥା କଟାକଟି, ଶୋଧାଶୋଧି । ସବୁ ଗହଣାପତ୍ର କାଢ଼ି ଢେଙ୍କେଙ୍କ ଉପରକୁ ଫିଙ୍ଗିଦେଲେ ଢେଙ୍କେମା' । ତା'ପରେ ଦୁମ ଦୁମ ଚାଲି କରି ନିଜ ଶୋଇବା ଘରେ ପଶି କବାଟ କିଳିଦେଲେ । ଢେଙ୍କେ ମଧ୍ୟ ଗରଗର ହୋଇ ଚାଲିଗଲେ ତାଙ୍କ ଶୋଇବା ଘରକୁ । ଦିନ ବିତିଗଲାଣି । ତଥାପି ଅଖିଆ ଅପିଆରେ ବୁଢ଼ାବୁଢ଼ୀ ଯେଝା ଜାଗାରେ ଯିଏ । କେହିହେଲେ ଭୋକରେ କଅଁ କଅଁ ରଡ଼ି ଛାଡୁଛି । ହେଲେ ମୁହଁରେ ଲାଜ । ଆଗେ ଯିଏ କଥା କହିବ, କାଳେ ହାରିଯିବ ।



Digitized by srujanika@gmail.com

ପିଲାମାନଙ୍କୁ ଏକଥା ଭାରି ଖରାପ ଲାଗିଲାଣି । ଗପ ନ ଶୁଣି ବି ବଡ଼ ଫାଙ୍କା ଫାଙ୍କା ଲାଗୁଚି ମନ । କେଉଁ ପୁଅ ଝିଅଟିଏ ପାଖରେ ଅଛି ଯେ ଡାକିବ, ବାପା ଆସ ଖାଇବ । ବୋଉ ଆ' ଖାଇବୁ । ଦୁଇ ବୁଢ଼ାବୁଢ଼ୀଙ୍କ ଛଡ଼ା କେହି ନାହିଁ ଘରେ । ଏମାନେ ହେଲେ ଲେଖାଯୋଖାରେ ନାତିନାତୁଣୀ ।

ଅବଶେଷରେ ଶିବୁ, ଟିଟୁ, ମିଲୁ, ଲିନୁ ଯାଇ ଅଲଗା ଅଲଗା ଭେଟିଲେ ଜେଜେ ଓ ଜେଜେମା'ଙ୍କ ମନକଥା ଜାଣିବା ପାଇଁ । ଜେଜେ ତାଙ୍କର ଭୁଲପାଇଁ ଯେତିକି ଅନୁତାପ କରୁଛନ୍ତି, ଜେଜେମା' ମଧ୍ୟ ସେତିକି ସନ୍ତେଇ ପନ୍ତେଇ ହେଉଛନ୍ତି ।

ଏଇ ସୁବିଧା ଦେଖି ସେମାନେ ଗୋଟିଏ ଉପାୟ ଚିନ୍ତା କଲେ । କିଛି ଟଙ୍କା ଚାନ୍ଦା କରି ବଡ଼ ଭାକୁଡ଼ ମାଛଟିଏ କିଣି ଆଣିଲେ । ମାଛଟି ଧରି ଜେଜେମା'ଙ୍କ ପାଖକୁ ଗଲେ । କହିଲେ- ସୁନା ଜେଜେମା' ମ ! ଉଠ, ଉଠ । ରାଗ ତମର ସେତିକିରେ ଥାଉ । ଦେଖିଲ, ଜେଜେ ଏଇ ବଡ଼ ମାଛଟି କିଣିକରି ଦେଲେ, ନିଅ । ରୋଷେଇବାସ କର । ଜେଜେଙ୍କୁ ବହୁତ ଭୋକ ଲାଗୁଛି । ଜେଜେ କହିଲେ ପନିପରିବା ସବୁ ଆସିଗଲାଣି । ଟେପ୍‌ରେକର୍ଡ଼ରେ ସିନେମା ସଙ୍ଗୀତ ବଜାହେଲାଣି । ଜଲ୍‌ଦି ରୋଷେଇ କର । ତୁମ ଦୁହିଁଙ୍କ ସାଙ୍ଗରେ ଆମେମାନେ ବି ଖାଇବୁ । ଭାରି ମଜା ହେବ ।

ସତେଯେମିତି ଜେଜେମାଆ ଏଇ କଥାକୁ କାନେଇଥିଲେ । ମନେ ମନେ ହସଟାଏ ହସି, ଉଠି ବସିଲେ । ସେ ଜାଣିଛନ୍ତି ଜେଜେ ଭୋକ ସମ୍ଭାଳି ପାରନ୍ତି ନାହିଁ ମୋଟେ । ତା'ଛଡ଼ା ମାଛରେ ତାଙ୍କର ବହୁତ ଶରଧା ।

ଜେଜେମା'ଙ୍କ ହସ ହସ ମୁହଁ ଦେଖି ପିଲାମାନେ ଠରାଠରି ହେଲେ ଯେ, ତାଙ୍କ ଔଷଧ ଠିକ ଭାବେ କାଟୁ କରିଛି । ସେଇଠି ଯିଏ ଯାହା କାମରେ ଲାଗିପଡ଼ିଲେ । କିଏ ପାଣି ଆଣିଲା, କିଏ ଚୁଲି ଜାଳିଲା, କିଏ ପରିବା କାଟିଲା ତ କିଏ ମାଛ କାଟିଲା, କିଏ ମସଲା ବାଟିଲା ।

ଘଣ୍ଟାକରେ ଜେଜେମା' ଦଶ ଠାଆ ରାନ୍ଧି କାଢ଼ି ଥୋଇଦେଲେ । ମଣ୍ଟୁ, ଟୁଟୁ ଚାଲିଲେ ଏଥର ଜେଜେଙ୍କ ପାଖକୁ । ଜେଜେ ବୋଧହୁଏ ରନ୍ଧା



Digitized by srujanika@gmail.com

ବାସନା ଶୁଙ୍ଘି ଶୁଙ୍ଘି ଏଇ ସୁଯୋଗକୁ ଅପେକ୍ଷା କରିଥିଲେ । ପିଲାଙ୍କ କଅଁଳ ଡାକରେ ଆଖି ମଳି ମଳି ଉଠିବସିଲେ । ପାଖରେ ପିଲାମାନଙ୍କ ଗହଳି ଦେଖି କହିଲେ, କଥା କ'ଣ ? ମଣ୍ଟୁ କହିଲା, ଜେଜେ ! ଜେଜେମା' ଡାକୁଛନ୍ତି, ଖାଇବ ଆସ । ପାଞ୍ଚଦିନ ହେଲା ଉପାସରେ ପଡ଼ିଛ, ଦେହ ମୁଣ୍ଡ ଖରାପ ହେବ । ଏତିକି ଟିକିଏ କଥାକୁ ଏଡ଼େ କରି ଧରି ବସିଛ ଯେ ବୁଢ଼ୀଲୋକ କାନ୍ଦି କାନ୍ଦି କଣ୍ଟା ହେଲାଣି । ସେ କହିଲେ, ତାଙ୍କର ଭୁଲ ହୋଇଛି, ଆଉଦିନେ ତମକୁ ଜିନିଷ ଆଣି ଦେବାକୁ କହିବେ ନାହିଁ । ତାଙ୍କ ଦୋଷ କ୍ଷମା କର ତମେ ।

ଜେଜେଙ୍କର ସବୁ ରାଗ ଏତିକିରେ ପାଣି ଫାଟିଗଲା । ସେ କହିଲେ, ଆରେ ମଣ୍ଟୁ, ତୋ' ଜେଜେମା'କୁ ପଚାରିଲୁ, କେଉଁଦିନ କିଛି କଥା ପାଇଁ ତାକୁ ମୁଁ ମନା କରିଛି ତେବେ । ସେଦିନ ମନ ଭଲ ନଥିଲା ମୋକଦ୍ଦମାରେ ହାରି ଯିବାରୁ । ଟିକେ ରାଗିଗଲି ବୋଲି ସେ କାହିଁକି ଏତେ ମନ ଦୁଃଖ କରି ବସିଛି । ମତେ କଥା ପଦେ ବି କହୁନାହିଁ । ମୁଁ କ'ଣ ଜାଣିଥିଲି ଘଟଣା ଏମିତି ହେବ ବୋଲି ? ଗହଣା କ'ଣ କୁଆଡ଼େ ସରିଯାଉଛି । କାଲି ସକାଳେ କଟକ ଯାଇ ସାଙ୍ଗେ ସାଙ୍ଗେ କିଣି ଆଣିବି ପରା । ମୋର କ'ଣ ନ'ଟା ଛ'ଟା କିଏ ଅଛନ୍ତି ଯେ ଲୋଭ କରିବି । ଜେଜେମା' ଭଲ ଗହଣା କି ଶାଢ଼ୀଟିଏ ପିନ୍ଧିଲେ ଖୁସିରେ ପରା ମୋ' ଛାତି କୁଣ୍ଢେମୋଟ ହୋଇଯାଏ । ଏଥର ଜେଜେମା'କୁ କହ ବଢ଼ାବଢ଼ି କରୁ । ମୁଁ ଆସୁଛି । ତା'ପରି ଲକ୍ଷ୍ମୀର ହାତପରଷା ନ ଖାଇଲେ କିମିତି ବଞ୍ଚିବି ଯେ । ତାକୁ କହ, ଆଉ ଦିନେ ତା'ଉପରେ ରାଗିବି ନାହିଁ । ସେ ବି ମୋ' କଥା ଧରିବ ନାହିଁ ଯେମିତି ।

ଏଥର ପିଲାମାନେ କୁରୁଳି ଉଠିଲେ । ପତ୍ରରେ ପାଣି ଛିଞ୍ଚିଲା ପୁପୁନ । ଜେଜେମା' ସମସ୍ତଙ୍କ ପତ୍ରରେ ବାଢ଼ି ସାରି ନିଜ ପତ୍ରରେ ବାଢ଼ି ବସିଲେ । ଜେଜେ ହାଉଁ ହାଉଁ କରି ଦି'ଗୁଣ୍ଡା ଖାଇଦେଇ ମାଛ ଝୋଳରୁ ସୋଡ଼କାଏ ନେଇ ଖୁସିରେ ମୁଣ୍ଡ ହଲାଇଲେ । ବେଲା ଭିତରୁ ଏତେବଡ଼ ମାଛ ମୁଣ୍ଡ ଦେଖି ଚମକି ପଡ଼ିଲେ । ଆରେ ଏଡ଼େ ସୁଆଦିଆ ଜିନିଷ ଆସିଲା କେଉଁଠୁ ?

ଜେଜେମା' କାବା ହୋଇ ଜେଜେଙ୍କ ମୁହଁକୁ ଚାହିଁ ରହିଲେ । ପିଲାମାନେ



Digitized by srujanika@gmail.com



ତଳକୁ ମୁହଁକରି ହସିବାକୁ ଲାଗିଲେ ।

ମଣ୍ଟୁ କହିଲା ଜେଜେ ! ଏ ମାଛ ଜେଜେମା'ଙ୍କ ବାପଘରୁ ଭାର ଆସିଥିଲା । ଭଲକରି ଖାଅ, ଯେତେ ଖାଇବ । ଏଥର ପିଲାମାନଙ୍କ ଚାଲାଖି ସହଜରେ ଧରିପାରିଲେ ଜେଜେ, ଜେଜେମାଆ ।

ମିତୁଲ କ୍ଷୀର ହାଣ୍ଡିରେ ଡଙ୍କି ପକାଇ ଶେଷରେ ସମସ୍ତଙ୍କ ପତ୍ରରେ ଅଜାଡ଼ିଲା । ସଡ଼ ସଡ଼ କରି କ୍ଷୀର ହାପୁଡ଼ି ଜେଜେ କହିଲେ, ଧନ୍ୟରେ ନାତି-ନାତୁଣୀ, ତମପାଇଁ ଆଜି ବଡ଼ ଭୋଜିଟାଏ ହେଲା ସିନା ।

ଖାଇସାରି ପାନଖିଲ ଜାକି ଜେଜେମା' ଆରମ୍ଭ କରିଦେଲେ ଗପମୁଣିରୁ ରସରସିଆ ଗପ ଗୋଟିଏ ପରେ ଗୋଟିଏ । ପିଲାଙ୍କ ସାଙ୍ଗରେ ଜେଜେ ବି ହୁଁ ମାରି ମାରି କହିଲେ, ଆଜି ପାଞ୍ଚଦିନ ପାଇଁ ଦଶଟି ଗପ କହିବ ଆମକୁ ।

ଜେଜେମା' କହିଲେ, ଠିକ୍ ଅଛି, ଦଶଟି ଗପ କହିବି କିନ୍ତୁ ଗୋଟିଏ ସର୍ତ୍ତ ରହିବ । ସର୍ତ୍ତଟି କ'ଣ ଜେଜେମା'ଙ୍କ ଠାରୁ ଶୁଣିବାପାଇଁ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ । ଜେଜେ ଭାବିଲେ, ସର୍ତ୍ତଟା ଯଦି ଏମିତି କିଛି ମହଙ୍ଗା



Digitized by srujanika@gmail.com

ଜିନିଷ ହୋଇଥାଏ, ଜେଜେଙ୍କ ମୁଣ୍ଡରେ ଚଡ଼କ ପଡ଼ିଯିବ, ଯାହା ଫଳରେ ତାଙ୍କର ସବୁ ପଇସା ଜେଜେମା'ଙ୍କ ଶାଢ଼ୀ, ଗହଣା କିମ୍ବା ଦେଶ ଭ୍ରମଣରେ ସରିଯିବ । ନାତି ନାତୁଣୀଙ୍କ ସାମ୍ନାରେ ରଖିଥିବା ସର୍ତ୍ତ ପୂରଣ କରିବାକୁ ହିଁ ପଡ଼ିବ, ନହେଲେ ପଙ୍ଗପାଳ ପରି ଜୀବନ ଶୋଷିନେବେ । ଖୁବ୍ ଚିନ୍ତାରେ ପଡ଼ିଗଲେ ଜେଜେ । ହଁ କହିବା ପରିବର୍ତ୍ତେ ଚୁପ୍ ରହିଗଲେ ।

ଏଥର ଜେଜେମା ଦରହସିଲା ହୋଇ ଜେଜେଙ୍କ ଆଡ଼କୁ ଚାହିଁ କହିଲେ, ଦଶଟି ଯାକ ଗପ ନସରିବା ଯାଏଁ କେହି ହେଲେ ଆଖିପତା ପକାଇବ ନାହିଁ, ଖାଲି ଚାହିଁ ରହି ହୁଁ ମାରିବ । ପିଲାମାନଙ୍କର ତ ଗପ ଶୁଣିବାରେ ମନ, ସେମାନେ ଖୁସିରେ ନାଚି ଉଠିଲେ, କେବଳ ଡରିଗଲେ ଜେଜେ । ଏହା କେମିତି ସମ୍ଭବ ହବ । ଗୋଟାଏ ଗପ ଶୁଣୁ ଶୁଣୁ ତ ତାଙ୍କର ଘୁଙ୍ଗୁଡ଼ି ଆସିଯାଏ । ଜେଜେମା'ଙ୍କ ନିର୍ଦ୍ଦେଶ, ଯିଏ ହାଇ ମାରିବ କି ଆଖି ବୁଜିବ, ସେଇଠାରୁ ଜେଜେମା'ଙ୍କ ଗପ କହିବା ବନ୍ଦ ହେବ ଏବଂ ସେ କହିବ ଦଶଟି ଗପ । ଜେଜେଙ୍କୁ ଟଙ୍କା ସୁନାଠାରୁ ଏକଥା ଆହୁରି ମହଙ୍ଗା ଓ ଲଜ୍ଜାଜନକ ମନେ ହେଲା । କେମିତି ଏ ସର୍ତ୍ତରୁ ରକ୍ଷା ପାଇବେ ଭାବି ଭାବି ତାଙ୍କ ମୁହଁ ଶୁଖିଗଲା ।

ଜେଜେମା' ପାନଖିଲ ଯାକି ଚୌକି ଉପରେ ବସି ମହାରାଣୀ ଠାଣୀରେ ଗପ ଆରମ୍ଭ କଲେ ।





Digitized by srujanika@gmail.com



# ପ୍ରକୃତ ଦକ୍ଷିଣା

ମଦନପୁର ଗାଁରେ ବିଶ୍ୱନାଥ ଚୋଧୁରୀଙ୍କ ଘର । ଅଚଳାଚଳ ସମ୍ପତ୍ତି ବାଡ଼ି କେଉଁଥିରେ ଅଭାବ ନାହିଁ । ସେ ଭାରି ଧର୍ମ ପରାୟଣ ଲୋକ । ସାଧୁ, ସନ୍ୟାସୀ, ଯୋଗୀ, ଭିକାରୀ ସମସ୍ତଙ୍କ ମନ ବୁଝନ୍ତି । ତାଙ୍କ ଦୁଆରୁ କେହିକେବେ ଖାଲିହାତରେ ଫେରି ଯାଏନାହିଁ, ଚାରିଆଡ଼େ ତାଙ୍କର ପ୍ରଶଂସା । ଏତେ କଥା ଥାଇ ଆଜିକାଲି ବିଶ୍ୱନାଥ ବହୁତ ଚିନ୍ତା ଓ ଦୁଃଖରେ ସମୟ କାଟୁଛନ୍ତି । ଯେତେବେଳେ ଦେଖ ମୁହଁରେ ହସ ନାହିଁ, ମନରେ ସରାଗ ନାହିଁ । ତା'ର କାରଣ କେହି ନବୁଝି ପାରିଲେ ବି ବୁଝିଛନ୍ତି ସ୍ତ୍ରୀ ବସୁମତୀ ।

ଦୁଇପୁଅ ସଂବିତ୍ ଓ ସଂଗୀତ୍ । ସଂବିତ୍ ବଡ଼ ଓ ସଂଗୀତ୍ ସାନ । ଦୁଇଜଣ ଯାକ ଯୁବକ । ବାପାଙ୍କର ବ୍ୟବସାୟ, ସଂପତ୍ତି ବାଡ଼ି ଭଲ ମନ୍ଦ କିଛି ବୁଝନ୍ତି ନାହିଁ ମଜା ମଉଜରେ, ହସ ଖୁସିରେ ସମୟ କଟାନ୍ତି । ଅଧିକ ପାଠ ପଢ଼ିବାରେ ମଧ୍ୟ ମନ ଦିଅନ୍ତି ନାହିଁ । ଦାମୀ ଦାମୀ ପୋଷାକ ପତ୍ର ପିନ୍ଧି, ଗାଡ଼ି ଘୋଡ଼ାରେ ବୁଲି ଅନ୍ୟମାନଙ୍କ ଉପରେ ହୁକୁମ୍ କରନ୍ତି । ବିଶ୍ୱନାଥଙ୍କର ଦୁଃଖର ସୀମା ନାହିଁ । ଜାଣୁ ଜାଣୁ ଆଖି ଆଗରେ ଏତେବଡ଼ ଘର ନଷ୍ଟ ହୋଇଯିବ, ଜମିବାଡ଼ି ପଡ଼ିଆ ପଡ଼ିବ, ସବୁ ଛାର ଖାର ଓ ନଷ୍ଟ ହେବ ।



Digitized by srujanika@gmail.com

ପୁଅ ଦୁହେଁ ବାପାଙ୍କର ମୂଲ୍ୟବାନ ଉପଦେଶ ଶୁଣନ୍ତି ନାହିଁ । ତେଣୁ ବିଶ୍ୱନାଥ ସେମାନଙ୍କୁ କିଛି ନକହି ଚିନ୍ତାରେ ଥାଆନ୍ତି । ବସି ଖାଇଲେ ନଈବାଲି ସରେ । ବିଶ୍ୱନାଥ ବୁଝନ୍ତି, ସେ ଆଖି ବୁଜିବାପରେ କିଛି ସଂପତ୍ତି ରହିବନାହିଁ ଶେଷକୁ ସଂବିତ୍ ସଂଗୀତ୍ ଭିକାରୀ ହୋଇ ବାର ଦୁଆରେ ହାତ ପତାଇବେ ।

ବସୁମତୀ କହିଲେ, ଏସବୁ ଆମର ଭାଗ୍ୟ ଖରାପ ପଡ଼ିବାରୁ ଘଟୁଛି । ତେଣୁ ନାହାକ ପଣ୍ଡିତ ଡାକି ପୁଅ ଦୁହିଁଙ୍କ କୋଷ୍ଠି ଦେଖାଇ ଗ୍ରହଶାନ୍ତି ପାଇଁ ହୋମଯଜ୍ଞ ଦାନ ଧର୍ମ କରିବା । ଶୁଭ ଦିନଟିଏ ଠିକ୍ କରି ଗୁରୁଦେବଙ୍କୁ ବରଣ କଲେ । ଖୁବ୍ ଯାକ ଯମକରେ ଉତ୍ସବ ଅନୁଷ୍ଠାନ ହେଲା । ପୂଜା ପର୍ବ ଦାନ ଧର୍ମ ଖିଆପିଆ, ଦିଆନିଆ ଚାଲିଲା । ଅସଲ କଥାଟି ବିଶ୍ୱନାଥଙ୍କ ଠାରୁ ଗୁରୁଦେବ ଶୁଣି ଚୁପ୍ ରହିଲେ । ସବୁକାମ ସରିଲା । ବିଶ୍ୱନାଥ ଦୁଇପୁଅଙ୍କ ହାତରେ କିଛି ଟଙ୍କାଦେଲେ; ଗୁରୁଦେବଙ୍କୁ ଦକ୍ଷିଣା ଦେବାକୁ । ଗୁରୁଦେବ ସଂବିତ୍ ଓ ସଂଗୀତ୍ ମୁହଁକୁ ଚାହିଁ ହସି ହସି କହିଲେ, ବାବା ! ଏ ଦକ୍ଷିଣା ମୋର କିଛିକାମରେ ଲାଗିବ ନାହିଁ; ତେଣୁ ମୁଁ ଆଜି ଏହାକୁ ଗ୍ରହଣ କରିପାରିବି ନାହିଁ । ଠିକ୍ ଦୁଇବର୍ଷ ପରେ ମୁଁ ତୁମଠାରୁ ନେବି । କିନ୍ତୁ ମନେ ରଖ, ସେ ଧନ ଯେମିତି ତମ ଦୁଇଭାଇଙ୍କ ପରିଶ୍ରମ ଓ ନିଜ ରୋଜଗାରର ଉଚିତ ଧନ ହୋଇଥାଏ । ଦୁଇଭାଇଙ୍କ ମୁହଁ ଗୁରୁଦେବଙ୍କ କଥାରେ ଶୁଖିଗଲା । ତାଙ୍କୁ ଭାରି ଲାଜ ମାଡ଼ିଲା । ଦକ୍ଷିଣା ନନେଇ ଆଶୀର୍ବାଦ କରି ଗୁରୁଦେବ ଚାଲିଗଲେ । ସମସ୍ତେ ଚିନ୍ତିତ, କାରଣ ଗୁରୁଦେବଙ୍କ ଦକ୍ଷିଣା ନନେବାଟା ଏଘରର ସମସ୍ତଙ୍କ ପାଇଁ ଅଶୁଭ । ବେଶିକରି ସଂବିତ୍, ସଂଗୀତ୍‌ଙ୍କର ଅମଙ୍ଗଳ ହେବ ।

ଗୁରୁଦେବଙ୍କ କଥା ଦୁଇଭାଇଙ୍କୁ ଭାରି ବାଧିଲା ଓ ଚିନ୍ତାରେ ପକାଇଲା । ପ୍ରକୃତରେ ସେ ଯୁଆଡ଼େ ଚାହୁଁଛନ୍ତି ସବୁ ବାପାଙ୍କ ପରିଶ୍ରମର ଫଳ, ବାପାଙ୍କର ଝାଳବୁହା ଧନସଂପତ୍ତି । ସେ ଦୁହେଁତ ଗୋଟିଏ ପଇସାବି ରୋଜଗାର କରିନାହାନ୍ତି । ଖାଲି ଯାହା ମନଖୁସିରେ ଖର୍ଚ୍ଚ କରି ଲାଗିଛନ୍ତି । ଛୋଟ ପିମ୍ପୁଡ଼ିଟିଏ, ମହୁମାଛିଟିଏ ମଧ୍ୟ କେତେ କର୍ତ୍ତବ୍ୟ ପରାୟଣ ! ଦୁନିଆରେ ସମସ୍ତେ କାମରେ ଲାଗି ପଡ଼ିଛନ୍ତି, ଦିନ ନାହିଁ ରାତି ନାହିଁ ଅଳସ ନାହିଁ ମନରେ ।

ଶେଷରେ ଦୁଇଜଣ ସ୍ଥିର କଲେ ନିଜ ଗୋଡ଼ରେ ନିଜେ ଠିଆ ହେବା ପାଇଁ । ଏଣିକି ବାପାଙ୍କ ସଂପତ୍ତି ନଷ୍ଟ ନକରି ନିଜ ପରିଶ୍ରମର ଫଳରେ ଗୁରୁଦେବଙ୍କ ପାଇଁ ଦକ୍ଷିଣା ଯୋଗାଡ଼ କରିବେ । ତା' ପରଦିନ ବାପା ମା'ଙ୍କ



Digitized by srujanika@gmail.com

ଠାରୁ ଆଶୀର୍ବାଦ ନେଇ ଘରଛାଡ଼ି ବାହାରକୁ ପାଦ ବଢ଼ାଇଲେ । ସାଙ୍ଗରେ ଲୁଗାପଟା ଦୁଇଖଣ୍ଡ ବ୍ୟତୀତ ଅନ୍ୟ କିଛି ଆଣି ନଥାନ୍ତି । ବୁଲି ବୁଲି ପାଦ ଅବଶ ହେଲା, ଭୋକରେ ପେଟ ବିକଳ ହେଲା, ତଥାପି କେଉଁଠାରେ କିଛି କାର୍ଯ୍ୟର ସଂଧାନ ପାଇଲେ ନାହିଁ । ତଥାପି ଚାଲିଥାଆନ୍ତି ଆଗକୁ ଆଗକୁ । କିଛିଦିନ ପରେ ଗୋଟିଏ ସହରରେ ପହଁଚିଲେ । ଦେଖିଲେ ସେଠାରେ ଗୋଟିଏ ଖୁବ୍ ବଡ଼ କାରଖାନା ତିଆରି ହେଉଛି । ଦୁଇଭାଇ ସେଠାରେ ପହଁଚି ମୁଖିଆଙ୍କୁ କାମ କରିବାକୁ ଅନୁମତି ମାଗିଲେ । କାମ ମିଳିଗଲା । କିନ୍ତୁ ଦେହରେ ଟିକିଏ ବଳ ନାହିଁ, କାମବି ଜଣାନାହିଁ ଯା'ହେଉ, କଷ୍ଟେ ମଷ୍ଟେ ଲାଗିପଡ଼ିଲେ । ଦିନ ଶେଷରେ ଯାହା ମିଳିଲା, ସେଥିରେ ଖାଦ୍ୟ ଯୋଗାଡ଼ କଲେ । ଧୀରେ ଧୀରେ ସବୁ କିଛି ସହଜ ଲାଗିଲା, କାମବଢ଼ିଲା ପଇସାବି ବଢିଲା । ନିଜେ ଚଳି କିଛି କିଛି ସଂଚୟ କଲେ । ଯୋଡ଼ାକୁ ଘୋଡ଼ା ସରିନୁହେଁ । ଦୁଇଭାଇ ମିଶି ଗୋଟିଏ ବଡ଼କାମ ଆଦରି ନେଲେ ଓ ଅନେକ ଲୋକଙ୍କୁ କାମରେ ଲଗାଇଲେ । ଫଳରେ ସେମାନଙ୍କର ପଇସା ଓ ସୁନାମ ବଢ଼ିବାକୁ ଲାଗିଲା । ଦୁଇବର୍ଷ ପୂରିବାକୁ କିଛିଦିନ ବାକିଥାଏ । ଦୁଇଭାଇଙ୍କର ଗୁରୁଦେବଙ୍କ କଥାମନେ ପଡ଼ିବାରୁ କିଛି ଦିନ ପାଇଁ ଗାଁକୁ ଆସିବାକୁ ସ୍ଥିରକଲେ ।

ବାହାର ଦୁନିଆ ବିଷୟରେ ଏମଧ୍ୟରେ ସେମାନଙ୍କର ଖୁବ୍ ଜ୍ଞାନ ହୋଇଯାଇଥାଏ । ଏଣିକି ଗୋଟିଏ ମୁହୂର୍ତ୍ତ ସେମାନେ ଅଯଥାରେ କଟାଇଲେ ନାହିଁ ।

ଠିକ୍ ସମୟରେ ଘରକୁ ଫେରିଲେ । ବାପା ମା' ବହୁଦିନୁ ଦୁଇ ପୁଅଙ୍କୁ ନଦେଖି ଝୁରି ଝୁରି କଣ୍ଠା ହୋଇଥିଲେ । ପୁଅ ଦୁହିଁଙ୍କୁ ଦେଖି ଆନନ୍ଦରେ ଫାଟି ପଡ଼ିଲେ । ସେମାନଙ୍କର ଚାଲିଚଳଣ, ବିନୟ ଭାବ ଓ ଆତ୍ମବିଶ୍ୱାସରେ ସମସ୍ତେ ମୁଗ୍ଧ ହୋଇଗଲେ ।

ଉପଯୁକ୍ତ ସମୟରେ ଗୁରୁଦେବ ଆସି ପହଁଚିଲେ । ଦୁଇଭାଇ ତାଙ୍କ ପାଦଛୁଇଁ ପ୍ରଣାମ କରୁ କରୁ କାନ୍ଦି ପକାଇଲେ ଆନନ୍ଦରେ । ନିଜର ସମସ୍ତ ରୋଜଗାର ଗୁରୁଦେବଙ୍କ ପାଦତଳେ ଥୋଇ କହିଲେ, ମହାଶୟ, ଦକ୍ଷିଣା ଗ୍ରହଣ କରନ୍ତୁ । ଗୁରୁଦେବ ଆଶୀର୍ବାଦ କରି କୁଣ୍ଢାଇ ପକାଇ କହିଲେ ବାବା, ତୁମେ ଦୁହେଁ ଯେ ଆଜି ମଣିଷ ହୋଇଛ, ନିଜର ଶକ୍ତି ସାହସ ସଂଚୟ କରି ନିଜଗୋଡ଼ରେ ଠିଆହୋଇ ପାରିଛ, ସେତିକି ମୋର ପ୍ରକୃତ ଦକ୍ଷିଣା ।





Digitized by srujanika@gmail.com



# ଅଜାଙ୍କ ହଟହଟା

ଆମ ପାଖ କୋଡ଼ିଏ ଖଣ୍ଡି ଗାଁରେ ନରି ଅଜାଙ୍କ ନାଁ ଡାକ । ସବୁ କଥାରେ ଅଜାଙ୍କୁ ଖୋଜାପଡ଼େ । ବୟସ ତାଙ୍କର ସତୁରୀ ଚାଲିଲାଣି ତଥାପି ଅଜା ଭାରି ଡାଗଡ଼ା । ଯୁଆନବେଳେ ଜୀଅନ୍ତା ବାଘର ନିଶ ଉପାଡ଼ିଥିଲେ ବୋଲି ଛାତିରେ ହାତ ବାଡ଼େଇ କହିବୁଲନ୍ତି । ଏତେ ସୁଗୁଣ ଥାଇ ମଧ୍ୟ ଅଜାଙ୍କର ଗୋଟିଏ ଦୁର୍ଗୁଣ ଥାଏ । ତାଙ୍କ ପରି କୃପଣ ଖଣ୍ଡମଣ୍ଡଳରେ ନଥିବେ । ପଇସାଟିଏ ହାତଛଡ଼ା କରିବା ତାଙ୍କ ଜାତକରେ ନାହିଁ । ଯୋଗୀ, ଭିକାରୀ,



Digitized by srujanika@gmail.com

ଦୁଃଖୀ ରଙ୍କୀ ଅଜାଙ୍କ ବଙ୍କଲା ବାଡ଼ି ଦେଖିଲେ ଦୂରରୁ ଜୁହାର ପକାଇ ବାଟ କାଟନ୍ତି । ବାଡ଼ିରେ ପିଜୁଳି କି କାକୁଡ଼ି କଷିଟାଏ ହେଲେ ଦିନରାତି ତାଙ୍କୁ ନିଦ ନଥାଏ ।

ଆଈ କିନ୍ତୁ ସାକ୍ଷାତ ଲକ୍ଷ୍ମୀ ପ୍ରତିମା । ଅଜାଙ୍କ ପ୍ରକୃତିର ସମ୍ପୂର୍ଣ୍ଣ ଓଲଟା ରୂପଟି ଯେମିତି, ଗୁଣ ତହୁଁ ଅଧିକ । ସେ ଥିଲେ  ଖୁବ୍ ସ୍ନେହୀ ଓ ଦରଦୀ । ତାଙ୍କ ଆଖିରେ ଛୋଟ କଥା ଯାଏ ନାହିଁ । ବାର ମାସରେ ତେର ଓଷା ବ୍ରତ ପାଳନ୍ତି । ଦୁଃଖୀ ରଙ୍କୀଙ୍କ ପେଟ ପାଟଣା ବୁଝନ୍ତି । ନିଜେ ନଖାଇ ଅନ୍ୟକୁ ଖୁଆନ୍ତି ଓ ନିଜେ ନପିନ୍ଧି ପରକୁ ପିନ୍ଧାଇବାରେ ତାଙ୍କର ବହୁତ ଆନନ୍ଦ । ହେଲେ କ'ଣ ହେବ । ଅଜା ଆଈଙ୍କର ଏଇଥି ପାଇଁ ରାତି ପାହିଲେ ନିଇତି ଝଗଡ଼ା । ଅଜାଙ୍କ ଡରରେ ଆଈ ବିଚାରୀ ହାତ ଖୋଲି କାହାକୁ ଦାନ ଧର୍ମ କରି ପାରନ୍ତି ନାହିଁ । ଦୁଇ ମଣିଷଙ୍କ ଛଡ଼ା ଘରେତ କାଉର ପୁଅଟିଏ ବି ନାହିଁ । ଧନ ଦରବ ଜମେଇ ରଖି ଲାଭ ଅବା କଅଣ ? ନିଜ ଅନ୍ତେ ଚୋର ଡକେଇତ ଖାଇବେ । ଆଈ ଜାଣନ୍ତି, ଯାହା ଖାଇଥିବ ପେଟକୁ, ଯାହା ରଖିଥିବ ଖଣ୍ଡକୁ । ସଂସାରେ ଥିବ ଯେତେଦିନ ଆନନ୍ଦ କରୁଥିବ ମନ । ଧନ ଅର୍ଜିଲେ ଧର୍ମ କରି, ଭାଗବତର ଏ କଥାକୁ ମାନିଥାଆନ୍ତି ।

ଅଜା ନଥିଲାବେଳେ ପାଖ ପଡ଼ିଶା ପିଲାଙ୍କୁ ଫଳ ଫୁଲଟିଏ ଦେଇ ଶରଧା କରନ୍ତି, ଆଈ ପାଞ୍ଚ ମାଇପିରେ ବସି ଗପସପ ଟିକେ ହୁଅନ୍ତି ।

ଥରେ ଅଜାଙ୍କ ବାଡ଼ିରେ ବଡ଼ ଦେଶୀ କଦଳୀ କାନ୍ଦିଟିଏ ପଡ଼ିଲା । ଆଈ ମନେ ମନେ ମାନସିକ କରିଥାଆନ୍ତି ସତ୍ୟନାରାୟଣ ପାଲାଟିଏ କରି ଭୋଗରାଗ କରି ପାଞ୍ଚ ପଚିଶିଙ୍କ ମୁହଁରେ ଲଗାଇବେ । ଅଜାଙ୍କ ଆଗରେ ଯେତେବେଳେ ଗେହ୍ଲେଇ ହୋଇ କହି ବସିଲେ, ଅଜାତ ରାଗରେ ନିଆଁ ବାଣ କ'ଣ ହେଲା । କ'ଣ ହେଲା, ଏତେ ପରିଶ୍ରମରେ ଗଛରେ ଫଳ ଫଳାଇଲି ଏଇଥି ପାଇଁ ? ନା ନା ସେ କଥା କଦାପି ହୋଇପାରିବ ନାହିଁ । ଏତେ ବଡ଼ କଦଳୀ କାନ୍ଦି, ହାଟରେ ବିକିଲେ ପଚାଶ ଟଙ୍କାରୁ ଊଣା ହେବ ନାହିଁ । ମୁଁ ଏତେ ଓଲୁ ହେଇଛି ଯେ ଏତେ ମେହେନତର ଫଳକୁ ମାଗଣାରେ ସାରିବି ? ତମ



Digitized by srujanika@gmail.com

ମୁଣ୍ଡରେ କ'ଣ ଭୂତ ପଶିଛିକି ? ଆଇଙ୍କ ପ୍ରସ୍ତାବ ଏକାଥରକେ କାଟ ଖାଇଯିବାରୁ ମୁହଁ ଶୁଖାଇ ଚୁପ୍ ରହିଲେ ।

କଦଳୀ ପାଚି ଚାରିଆଡ଼େ ବାସ ମହକିଲା, ଠିକ୍ ସମୟ ଦେଖି ସବୁଯାକ ଟୋକେଇରେ ପୂରେଇ ପାଇକଛା ଭିଡ଼ି ନଈ ଆର ପାରି ହାଟକୁ ବିକିବାପାଇଁ ବାହାରି ପଡ଼ିଲେ ଅଜା । ଖୁସିରେ ପାଦ ଏଠି ସେଠି ପଡୁଥାଏ । ମନରେ ଅସରନ୍ତି ଭାବନା, କଦଳୀ ଟୋକେଇ ମୁଣ୍ଡରେ ମୁଣ୍ଡେଇ ଡାହାଣ ହାତରେ ବଙ୍କୁଲି ବାଡ଼ି ଧରି ନିମିଷକରେ ଘାଟ ପାଖରେ ପହଞ୍ଚିଗଲେ ଅଜା । ତା' ପରେ ଛାଡ଼ିଲେ ନାଉରୀକୁ ଉଠିଆ ଡାକ । ବଇଶାଖ ମାସର ଦିପହର ଝାଞ୍ଜିଖରା ଦିହରେ ତୀରଭଳି ଗଳି ଯାଉଛି । ବାଟରେ ଗୋଟାଏ ହେଲେ ହାଟୁଆ ଆଖିରେ ପଡୁନାହାନ୍ତି । ନାଉରୀ ବିଚରା ଘରେ ଭୋକ ଶୋଷ ମାରୁଥିବ । ଅଜାଙ୍କର ରାଗ ପଞ୍ଚମରେ ପହଞ୍ଚି ଗଲାଣି, ତଥାପି ଟିକିଏ ବସିପଡ଼ି ଥକ୍କା ମାରିବାକୁ ନାରାଜ । କେମିତି ସଅଳ ଯାଇ ହାଟରେ ପହଞ୍ଚିବେ ସେ ହେଲା ଚିନ୍ତା । କଦଳୀ ମୁଣ୍ଡେଇ ଏପଟ ସେପଟ ହୋଇ ନାଉରୀକୁ ଶୋଧା ଆରମ୍ଭ କରିଦେଇଥାନ୍ତି ।

ଅଜାଙ୍କୁ କି ଜଣା, ପାଖ ଝଙ୍କା ବରଗଛ ଉପରେ କେଉଁ କାଳୁ ହନୁମାଙ୍କଡ଼ ପୁଞ୍ଜାଏ ବସା ବାନ୍ଧି ଏଡାଳ ସେଡାଳ ହେଉଥାଆନ୍ତି । ଯେମିତି ଅଜାଙ୍କ ହଳଦୀ ଗରଗର କଦଳୀ ଟୋକେଇରେ ନଜର ପଡ଼ିଛି, ଆଉକି ଛାଡ଼ନ୍ତି ସହଜେ ରାସ୍ତା ନିଛାଟିଆ । ସଙ୍ଗେ ସଙ୍ଗେ ଗଛଡାଳରୁ ଡେଇଁ ପଡ଼ିଲେ ଏକାସଙ୍ଗେ ଅଜାଙ୍କ ମୁଣ୍ଡ ଉପରକୁ । ବାପାଲୋ ମାଆଲୋ କହି କଚାଡ଼ି ହୋଇ ପଡ଼ିଲେ ଅଜା, ଟଣା ଭିଡ଼ା, ଗଡ଼ାପଡ଼ାରେ ଚେତା ହଜିଗଲା ସେଇଠି । ଚାହୁଁ ଚାହୁଁ କଦଳୀତକ ଝାମ୍ପିନେଇ ଗଛ ଉପରକୁ ଉଠିଗଲେ ହନୁପୁଞ୍ଜାକ । ରକ୍ତ ସ୍ନାନ ହୋଇ ଅଜା ପଡ଼ିଥାଆନ୍ତି ନଈକୂଳ କିଆବୁଦା ମୂଳେ ।

ବେଳ ରତରତ ହୋଇ ଆସିଲାଣି, ହାଟରୁ ଏଇ ବାଟଦେଇ ଫେରୁଥିଲେ ମିଟୁ ଓ ପିଣ୍ଟୁ ଦୁଇ ସଙ୍ଗାତ । ସେମାନେ ପାଖ ଗାଁଆର ପିଲା । ଅଜାଙ୍କ ଅବସ୍ଥା ଦେଖି ସେମାନଙ୍କ ଆଖିରେ ଲୁହ ରହିଲା ନାହିଁ । ଛୋଟ ପିଲା ସେମାନେ କ'ଣ ବା କରିବେ । ପ୍ରଥମେ ନଈରୁ କିଛି ପାଣି ଆଣି ଅଜାଙ୍କ ମୁହଁରେ



Digitized by srujanika@gmail.com

ଛାଟିଲେ । କିଛି ସମୟ ଆଉଁସା ଘଷା କଲେ । ଧୀରେ ଧୀରେ ସଞ୍ଜବୁଢ଼ର ଶୀତଳ ପବନ ବାଜି ଅଜାଙ୍କ ଚେତା ଫେରିଲାରୁ ଦୁହେଁ ଧରାଧରି କରି ଉଠାଇଲେ । ଆସ୍ତେ ଆସ୍ତେ ଅଜା ପାଦ ତଳେ ଲଗାଇଲେ । ମିଟୁ ପିଣ୍ଟୁକୁ ଆସରା କରି ଘରେ ପହଞ୍ଚିବାବେଳକୁ ରାତି ବହୁତ । ସେତେବେଳକୁ ଆଈ ଭାତ ରାନ୍ଧି ମସଲା ବାଟି ଅପେକ୍ଷା କରି କରି ଘୁମେଇ ପଡ଼ିଥାଆନ୍ତି ।

ମିଟୁ ଓ ପିଣ୍ଟୁଙ୍କ କବାଟ ବାଡ଼ିଆ ଶବ୍ଦରେ ଆଈ ଧଡ଼ପଡ଼ ହୋଇ ଉଠି ବସିଲେ ଓ ଦରଜା ଖୋଲିଦେଲେ । ଅଜାଙ୍କ ଅବସ୍ଥା ଦେଖି ଦୁମ୍ କରି ତଳେ କଚାଡି ପଡ଼ିଲେ । ଇଲୋମୋ ସଂସାର ସରିଲାଲୋ, କିଏ କେଉଁଠି ଅଛ ଧାଇଁ ଆସ ।

ମିଟୁ ପିଣ୍ଟୁ ଅଜା ଆଈଙ୍କୁ ନେଇ ଧରାଧରି କରି ଘରେ ଶୁଆଇଲେ ଚାହୁଁ ଚାହୁଁ ଗାଁ ଗୋଟାକର ଲୋକ ଜମାହୋଇ ପଡ଼ିଲେ । ସମସ୍ତେ ଲାଗିଲୁଗି ଅଜାଙ୍କ ସେବା କଲେ । ମିଟୁ ଓ ପିଣ୍ଟୁଙ୍କ ବୁଦ୍ଧି ପାଇଁ ସମସ୍ତେ ଧନ୍ୟ କଲେ ସାତ ଆଠ ଦିନ ଅନ୍ତେ ଅଜା ଯେତେବେଳେ ଆରାମ ହୋଇ ବାଡ଼ି ଧରି ଧରି ଦାଣ୍ଡକୁ ପାଦ ବଢ଼ାଇଲେ, ଲାଜ ସରମରେ ମୁହଁ ତାଙ୍କର ଜଳି ଯାଉଥାଏ । ମୁହଁ ଟେକି କାହାକୁ ଚାହିଁପାରୁ ନଥାନ୍ତି ଅଜା; ମାଙ୍କଡ଼ ରାମ୍ପୁଡ଼ା ଚିହ୍ନରେ ଦେହ ମୁହଁ ଭାରି ଅସୁନ୍ଦରିଆ ଦିଶୁଥାଏ । ଅଜାଙ୍କ ପରି ଏଡ଼େ ସାମର୍ଥିଆ ଲୋକର ଅତି ଲୋଭ ହେତୁ ଏଇ ଅବସ୍ଥା ହେଲା ।

ଆଈଙ୍କର ସେବା ଶୁଶ୍ରୂଷା ଓ ଭଲ ଭଲ ପଥି, ଭିଟାମିନ୍ ଥିବା ଖାଦ୍ୟମାନ ଖାଇ ଅଜା ପୁଣି ସତେଜ ସୁନ୍ଦର ହୋଇ ଉଠିଲେ । ସଫା ଧୋତି, କୁର୍ତ୍ତା ଯୋତା ଛତା, ନହେଲେ ତାଙ୍କୁ ଏଣିକି ମାଡ଼ିପଡ଼ିଲା । ଆଈଙ୍କୁ ସାଙ୍ଗରେ ଧରି ଆଈଙ୍କ ରୁଚି ଅନୁସାରେ ଘଡ଼ି, ଡାକ୍ତରଙ୍କ ପାଖରେ ଆଖି ପରୀକ୍ଷା କରି ଚଷମା କିଣି ଆଣିଲେ ଅଜା । ପୁରାଣଶାସ୍ତ୍ର, ଦେଶ ବିଦେଶର ଖବର ପଢ଼ାପଢ଼ିରେ ମନ ଦେଲେ । କ୍ରମେ ତାଙ୍କର ଚିଡ଼ିଚିଡ଼ା ଓ ଲୋଭୀପଣ କୁଆଡ଼େ ଉଭେଇଗଲା । ଅଜାଙ୍କୁ ବାହାରେ ସମସ୍ତେ ନାକଟେକିବା ପରିବର୍ତ୍ତେ ସମ୍ମାନ କରିବାକୁ ଲାଗିଲେ । ଅଜା ଆଈଙ୍କ କଥାକୁ ଅକ୍ଷରେ ଅକ୍ଷରେ ମାନି ସମାଜସେବା



Digitized by srujanika@gmail.com

ଆଡ଼କୁ ମନ ବଳାଇଲେ । ଚାହୁଁ ଚାହୁଁ ତାଙ୍କର ଖ୍ୟତି ବଢ଼ିବାରେ ଲାଗିଲା ।

ଅଜାଙ୍କ ଜନ୍ମଦିନରେ ଆଈଙ୍କ ଆୟୋଜନରେ ଗୋଟିଏ ଶିଶୁମେଳା ଓ ବିଭିନ୍ନ କୌତୁକିଆ କାର୍ଯ୍ୟକ୍ରମମାନ ପ୍ରସ୍ତୁତ କରାଗଲା; ଖିଆପିଆ ଦିଆନିଆ ଆନନ୍ଦ ଉତ୍ସବରେ ଏରିଆ ସାରା ଫାଟି ପଡ଼ିଲା । ନାତିନାତୁଣୀମାନଙ୍କ ଆୟୋଜନରେ ଟିଭି, କ୍ୟାମେରା ଆସିଲା । ସଭା ସମିତିର ଫଟୋ ଉଠାହେଲା । ଆଈ ଅଜାଙ୍କ ସମ୍ମାନ ସମ୍ବର୍ଦ୍ଧନା ଦେଖି ସମସ୍ତେ ବିସ୍ମିତ ହୋଇଗଲେ । ଟିଭି ସାମ୍ବାଦିକମାନେ ଫଟୋ ସହିତ ସାକ୍ଷାତକାର ବି ନେଲେ । ଅଜା ଆଈଙ୍କୁ ସେ ଅଞ୍ଚଳର ଶ୍ରେଷ୍ଠ ସମାଜସେବୀର ଆଖ୍ୟା ଦିଆଗଲା ।

ଅଜାଙ୍କର ଏକ ପ୍ରକାର ନୂଆ ଜନ୍ମ ହେଲା । ଉଦାସ ଚିଡ଼ିଚିଡ଼ା ପଣ ଛାଡ଼ି ଅଜା ହସିହସି ଆନନ୍ଦରେ ଫାଟି ପଡୁଥାନ୍ତି । ତାଙ୍କୁ ଏସବୁ ଭେଳିକି ଭଳି ଲାଗୁଥାଏ । ଆଈଙ୍କ ମନଲାଖି ରଙ୍ଗୀନ ଟିଭିଟିଏବି କିଣାହେଲା । ସଂନ୍ଧ୍ୟା ପରେ ପିଲାମାନେ ପାଠପଢ଼ା ସାରି ଅଜା ଆଈଙ୍କ ପାଖରେ ମେଳା କଲେ । ସାଇପଡ଼ିଶା ଲୋକେ ମଧ ଯିବାଆସିବା କଲେ । ଅଜା ଆଈଙ୍କ ଘରୁ ଏକୁଟିଆ ଶୂନ୍‌ଶାନ୍ ପଣ ଦୂର ହୋଇ ହସଖୁସିର ଲହରୀ ଖେଳିଗଲା । ଆଈ କହିଲେ, ବେଶି ଲୋଭ କଲେ ଲାଭ କ'ଣ ? ଖୁସିରେ ରହିବା ପାଇଁ ଦୁନିଆକୁ ଜାଣିବାପାଇଁ ହେଲେ କିଛି ଖର୍ଚ୍ଚ କରିବାକୁ ହେବ ।

ପିଲାଏ ଖୁସିରେ ଖୁସିରେ ଗୀତ ବାନ୍ଧିଦେଲେ-

ଆଈ ପାଟରାଣୀ, ଅଜାତ ରଜା/ଆମେ ଯେତେ ସବୁ ତାଙ୍କ ପରଜା
ବଜା ମହୁରୀଆ ମହୁରୀ ବଜା/ଫୁଲରେ ଫୁଲରେ ତୋରଣ ସଜା ।





Digitized by srujanika@gmail.com

ସୁସାହିତ୍ୟିକା ନିର୍ମଳା ମହାନ୍ତି ସାମ୍ପ୍ରତିକ ଓଡ଼ିଆ ଭାଷାସାହିତ୍ୟର ଏକ ବରିଷ୍ଠ ତଥା ମୌଳିକ ଉଚ୍ଚାରଣ, ୧୯୪୬ ମସିହାରେ ଜଗତସିଂହପୁର ଜିଲ୍ଲାର ଦେବୀନଦୀ କୂଳ ପୋଦନୁଆଁ ଗ୍ରାମରେ ଜନ୍ମଗ୍ରହଣ କରିଥିବା ଏହି ସାହିତ୍ୟିକା ଦୀର୍ଘ ତିନି ଦଶନ୍ଧିରୁ ଊର୍ଦ୍ଧ୍ୱକାଳ କଲମ ଚାଳନା କରି ଗଳ୍ପ, କବିତା, ପ୍ରବନ୍ଧ, ଶିଶୁଗଳ୍ପ-କବିତା ଓ ଅନେକ ଗୀତି କବିତା ରଚନା କରି ଓଡ଼ିଆ ଭାଷା ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଆମ ସାହିତ୍ୟର ବିଭିନ୍ନ ବିଭାଗରେ ତାଙ୍କର ଅନେକ ପୁସ୍ତକ ପ୍ରକାଶିତ । ସମ୍ପ୍ରତି ପ୍ରକାଶିତ ଏହି ଶିଶୁଗଳ୍ପ ପୁସ୍ତକ 'ଆଇସ୍କ୍ରିମ୍‌ର ପାର୍ଟି' ଶିଶୁ ମନସ୍ତତ୍ତ୍ୱ ଉପରେ ଆଧାରିତ କେତୋଟି ଶିକ୍ଷଣୀୟ ତଥା ଆମୋଦିତ ଶିଶୁଗଳ୍ପର ସମାହାର ।

-ପ୍ରକାଶକ

Digitized by srujanika@gmail.com